# ACHARYA HARIHAR
# Annual



"ଗାନ୍ଧିଜୀ ଓ ଆଚାର୍ଯ୍ୟ-ଉଭୟଙ୍କ ଚରିତ୍ରରେ ପୁରାପୁରି ମେଳ । କେବଳ ଏତିକି ପ୍ରଭେଦ-ଗାନ୍ଧିଙ୍କୁ ଲୋକେ ଗୁଳି କରି ମାରିଥିଲେ, କିନ୍ତୁ ଆଚାର୍ଯ୍ୟଙ୍କୁ କେହି ଦିନେ ଟେକାଟିଏ ପକାଇବାକୁ ସାହସ କରି ନାହିଁ ।"

—କୃପାସିନ୍ଧୁ ହୋତା

# ACHARYA HARIHAR ANNUAL
## 1989-90

# 112 TH BIRTH ANNIVERSARY
# SOUVENIR

ACHARYA HARIHAR EDUCTION SOCIETY
BHUBNESWR

# Acharya Harihar Education Society (AHEDS)

Sri J.C. Buddharaj
Patron

Er. Benudhar Mahapatra
Patron

AHEDS Manages the following Educational Organisations,

1. Acharya Harihar Mahavidyalaya & Pracharak Ananta Mishra Granthagara
2. Kantakavi Fund
3. Folklore Academy, Bhubaneswar
4. Bairagi Misra Institute of Technical Education,
5. Publications Department
6. Pandit Nilakantha Recesarch Institute,

and offers scholarships, aids to deserving students in the country within its financial limitations

Sri Biraja S. Acharya
Secretary

Dr. Bhabagrahi Misra
President

# Looking Back

**Acharya Harihar Eduction Society**

[PR-589/385-1981-82]

Income Tax Registration No. ADM [GL] 53/24/81-82

Since the last nine years, we have been struggling hard to establish centres of learning based on " Certainl principles". But in the days of commercial outlook and attitudes, it haes been difficult for us to translate our dreams in to action. But we have survived with the sympathy, kindness and generous contributions from friends all over the world.

Acharaya Harihar is no lorger a name confined to the geographical boundary of Orissa. We have beaneable to place him within the increasing, freedom-seeking people of the world.

We have had our times with mixed feelings —people disuading us and also friends persuading us to continue our efforts.

Acharya Harihar's life, activities and philosophy to transfrom people as - "Good Persons" provide us the insipiration to work harder than before and we trust we can meet the challanges on our way to sustain our efforts.

Biraja S. Acharya
Secretary

Bhabagrahi Misra
President

୨୨ । ୨ । ୯୦

ବନ୍ଧୁଗଣ !

ଏ ପରିବର୍ତ୍ତନଶୀଳ ପୃଥିବୀରେ ପ୍ରତ୍ୟେକ ଦିନ ଓ ମୁହୂର୍ତ୍ତରେ ସଂଗ୍ରାମୀ ମଣିଷମାନେ ଏ ବିଶ୍ୱକୁ ଅଧିକ ମୁକ୍ତ କରିବାକୁ ଚେଷ୍ଟା କରି ଆସିଛନ୍ତି । ଶାସକ ଓ ଶାସିତ ମାନଙ୍କ ମଧ୍ୟରେ ଥିବା ପ୍ରାଚୀରକୁ ଦୂର କରିବାକୁ ସଚେଷ୍ଟ ଅଛନ୍ତି ।

ଆମେ ସବୁ ଯିଏ, ଆଚାର୍ଯ୍ୟ ହରିହରଙ୍କର ଜୀବନର ଆଦର୍ଶକୁ କର୍ମ ପ୍ରେରଣାର ଉତ୍ସ ଭାବରେ ଗ୍ରହଣ କରି ଆସିଛୁ, ସେମାନଙ୍କର ସଂଖ୍ୟା କମି କମି ଆସୁଛି ।

କିନ୍ତୁ ଯୁବସମାଜ ଭିତରେ ମଧ୍ୟ ବହୁ ନୂଆ ମୁହଁ ଦେଖିବାକୁ ମିଳୁଛି—ଯେଉଁମାନେ ଅର୍ଥନୀତିର ପ୍ରଭାବ ଦ୍ୱାରା ଆକ୍ରାନ୍ତ ହେଉଥିଲେ ମଧ୍ୟ ମଣିଷ ଜୀବନର 'ମଣିଷ ପଣିଆ''କୁ ସ୍ୱୀକୃତି ଦେଇ ଆସିଛନ୍ତି ।

ଆମର ସ୍ୱପ୍ନ ସାର୍ଥକ ହେଉ ବା ନହେଉ ଆମ ପରିକଳ୍ପନା ଯଦିବା ଧୂଳିସାତ୍ ହୋଇଯାଏ, ତେବେବି ଏଇ ୯ ବର୍ଷ ଭିତରେ ଆମେମାନେ ଯେତିକ ବନ୍ଧୁ ଓ ଶତ୍ରୁକୁ ପାଇଛୁ, ସେମାନେ ଦିନକ ପାଇଁ ବା ଏପରିକି ମୁହୂର୍ତ୍ତିକ ପାଇଁ ଆଚାର୍ଯ୍ୟ ହରିହରଙ୍କର ବାଣୀ ''ଭଲ ମଣିଷ ହୁଅ''କୁ ସ୍ମରଣ କରି ପାରିଲେ ବି ପୃଥିବୀର ମାନଚିତ୍ର ବଦଳିବାରେ ସହାୟକର ଭୂମିକା ନେଇ ପାରିବେ—

ନିକଟ ଭବିଷ୍ୟତରେ ମୁଁ ଅବସର ନେବି—ଆଦିବାସୀ ଅଞ୍ଚଳରେ ବାସ କରି ସେମାନଙ୍କଠାରୁ ଶିକ୍ଷା ଗ୍ରହଣ କରିବା ପାଇଁ ପ୍ରସ୍ତୁତ ହେଉଛି –ତେଣୁ ଯେଉଁମାନେ ଏ ଅନୁଷ୍ଠାନକୁ ଚଳାଇ ରଖିବାକୁ ପ୍ରସ୍ତୁତ ସେମାନଙ୍କୁ ଆଗଭର ହେବାକୁ ପଡ଼ିବ । ନଚେତ୍ ଏ ଅନୁଷ୍ଠାନକୁ ବନ୍ଦ କରି ଦିଆଯିବ । କାରଣ ଅନୁଷ୍ଠାନ ଯଦି ତା'ର ଆଦର୍ଶ ରକ୍ଷା କରି ନପାରେ, ସେ ଅନୁଷ୍ଠାନ ବଞ୍ଚି ରହିବାର ଆବଶ୍ୟକତା ନାହିଁ ।

ନମସ୍କାରାନ୍ତେ

ଆପଣଙ୍କର

ସଭାପତି

# ଶ୍ରଦ୍ଧାଞ୍ଜଳି

ମନୋରଞ୍ଜନ ମହାରଣା

ହେ ଋଷିବର,
ଜଣାଏ ପ୍ରଣତି ମୁହିଁ
ପବିତ୍ର ସ୍ମୃତିରେ,
ଏଇ ଆଖି ଆଗେ ଆଗେ
ଦିଶିଯାଏ ହେ ଦେବତା
ତୁମର ସୌମ୍ୟ ମୂରତି,
ଜଣାଏ ମୁଁ ଶ୍ରଦ୍ଧାଞ୍ଜଳି
ଭକ୍ତି ଭରେ ତବପଦେ,
ସ୍ୱରଗରେ ରହି ତୁମେ
ଆଶୀର୍ବାଦ କର ହେ ଦେବତା,
ଦିଅ ହେ ପାଥେୟ,
ଏ ଜୀବନେ ଯାହା ମିଳୁ
ଆଶ୍ୱାସନା ମିଳି ଯାଉ
ପଦେ ତୁମ ଏତିକି ମିନତି ।।

ବଙ୍କ ସାହି
ଭଦ୍ରକ-୭୫୬୧୦୦
ବାଲେଶ୍ୱର ଜିଲ୍ଲା

# ଶେଷ ନମସ୍କାର

ଲୋକନାଥ ପୃଷ୍ଟି

ହେ ପୂଜ୍ୟ, ହେ ଆର୍ଯ୍ୟ, ଆଚାର୍ଯ୍ୟ ହରିହର ଶେଷ ନମସ୍କାର
ତ୍ୟାଗୀ, ଜ୍ଞାନୀ, ଗୁଣୀ, କବି ଇତିହାସେ ତୁମେ ତ ଅମର
ଯୁଗ ଅବତାର ଶେଷ ନମସ୍କାର ।।

ଦୀନବନ୍ଧୁ, ଗୋପବନ୍ଧୁ, ମଣି ଉତ୍କଳର
ବୟୋଜ୍ୟେଷ୍ଠ ମନ୍ତ୍ରୀ ଉତ୍କଳର
ବୟୋଜ୍ୟେଷ୍ଠ, ଜ୍ଞାନ ଗରିଷ୍ଠ ନୀଳକଣ୍ଠଙ୍କର
ଛବିଳ—ଉତ୍କଳ ଦରଣା କବି ଗୋଦାବରୀଶର
ପୁଣି—ଐତିହାସିକ କୃପାସିନ୍ଧୁ, ବନ୍ଧୁ ତୁମର
'ଯୁଗ ପଞ୍ଚସଖା' ସେ ସତ୍ୟବାଦୀର ହେ ଯୁଗ ଅବତାର
ଶେଷ ନମସ୍କାର ।।୧।।

ତୁମେ କୁଳଗୁରୁ, ମହାନ୍ ଶିକ୍ଷକ, ଆଦର୍ଶ ସେବକ ଦେଶର
ମଣିଷ ଜାତିର, ଶକ୍ତିର ମୁକ୍ତିର, ଆଉ ଯଶର ବିଶ୍ବର
ହସ ଆଉ ହର, ତ୍ୟାଗର ଭୋଗର, ଜାତିର ବ୍ୟକ୍ତିର
ଅନ୍ତର ବାହାର, ସଂହତି ସଂଯୋଗ, ଆଶା ଭରସାର
ସେଦିନ ଏଦିନ ସହ ଆଗାମୀ ଯୁଗର-ହେ ଯୁଗ ଅବତାର
ଶେଷ ନମସ୍କାର ।।୨।।

ମାତ୍ର ଆଜ ! ତୁମ ସତ୍ୟବାଦୀ ପୁଣ୍ୟପୀଠବେଦୀ ତଳେ ଲୁହଧାର
ତା ବେଦନା ଶିର, କରେନି ଅସ୍ଥିର, ଦେହମନ ପ୍ରାଣଆତ୍ମାଟି
ମାୟା, ମୋହ ମଦ ମେଦୁରେ ଶ୍ରୀହୀନ ସେ ବକୁଳ ବନର
ବିଦ୍ୟାପୀଠର

ଅତୀତ ଯାଇଛି ହଜି ଆହା ଆଜ ! ବର୍ତ୍ତମାନର ଅହଙ୍କାର
ସ୍ବାର୍ଥ ପାରାବାର
ହେ ଯୁଗ ଅବତାର-ଶେଷ ନମସ୍କାର ।।୩।।

ସାକ୍ଷୀ ଗୋପାଳ ମନ୍ଦିର, ଗଙ୍ଗାଘାଟ ଯାତ୍ରୀଘର
ଜଗନ୍ନାଥ ଦର୍ଶନର ସାକ୍ଷୀ "ସାକ୍ଷୀ ଗୋପୀନାଥ" ଯେ ସବୁର
ତୀର୍ଥ ଯାତ୍ରୀର, ପାନ୍ଥ ପଥିକର, ପୁରାତନ ଐତିହ୍ୟର
ପୌରାଣିକ ତଥ୍ୟ ସମୂହର, ପୁଣି ସୂଚନା ପ୍ରଚୁର ପ୍ରସାରର
ଧନ ଥିଲେ ତା'ର ମନ ସତେ ନାହିଁଟି କାହାରହେ ଯୁଗ ଅବତାର
ନେଉନ ନମସ୍କାର ।।୪।।

ପଞ୍ଚସଖା ସମାଧି ପୀଠର ମହାମନୀଷୀର ଲୁହଧାର
ବନ୍ଧୁ ଭକ୍ତେ ଏବେ ପ୍ରୀତ ପଣତ ମାଆର-ଶୁଭେ ହାହାକାର
ସତ୍ୟବାଦୀ ସଙ୍ଗେ ଯୁଅଣ୍ଡୋ କାନ୍ଦୁଛି, ଚିଲିକା ବ ସେ ବେଳା ଭୂମିର
ସେ ବେଦନା ଶୁଣିବ ବା କିଏ ? ସେ ଯାତନା ବୁଝିବ ବା କିଏ ?
କାହିଁକି ଆଜର
ଜାତୀୟ କର୍ତ୍ତବ୍ୟ ଆଜ ହାୟ ମାନେ ହାର
ତେବେ କଣ ବୃଥା ସବୁ-ଜବାହର ରୋଜଗାର, ଯୋଜନା ଅର୍ଥର ?
ହେ ଯୁଗ ଅବତାର - ନେଉନ ନମସ୍କାର ।।୫।।

ଭାର୍ଗବୀ ନଦୀର ଧାର କାନ୍ଦକହେ ତାର ମହାପୁରୁଷର
ଶ୍ରମ କେବେ ବୃଥା ନୁହେଁ-ବିଳମ୍ବ ନାହିଁଟି ସତ୍ୟର,
ଅସମ୍ଭବ ସମ୍ଭବ ଯାହାର, ପ୍ରଭୁ ପକ୍ଷେ ନିମିଷେ ମାତର

ଶୁଖିଯିବ ନାହିଁ କେବେ ଅମୃତ ନିର୍ଝର
ଯୁଗ ଯୁଗ ଚିର ଧର୍ମ ଧ୍ୱଜା ତାର-ହେ ଯୁଗ ଅବତାର ।
ନେଉନ ନମସ୍କାର ।।୬।।

ଲକ୍ଷ ଲକ୍ଷ ଧାର, ସାଧୁ ସାଧକର ଶ୍ରମେ ହୋ କାତର
ଭକ୍ତ ଭକ୍ତ ପ୍ରାଣବନ୍ଧୁ ଯୁଗଯୁଗ ଚିର-ଜାଗିବେ ଅବଶ୍ୟ
ନେଉନ କୋଟି ତେଜ ଦିବାକର
ହେ ପର ପ୍ରତୀକ ସଦା ଶୌର୍ଯ୍ୟର ଧୈର୍ଯ୍ୟର
ଅନ୍ତରର ଯିବଟି ନିଶ୍ଚୟ ଦିନେ ଜଡ଼ତା ଅନ୍ଧାର
ସାରା ରାଇଜ୍ୟ ଥରେ ଆଶୀର୍ବାଦ କର—
ଆଶୀର୍ବାଦ କର-ହେ ଯୁଗ ଅବତାର
ନେଉନ ନମସ୍କାର ।।୭।।

*

ଶାଙ୍ଖଚିଲ୍
କଟକ

# ଅଜାତ ଶତ୍ରୁ

ଅନ୍ନପୂର୍ଣ୍ଣା ଦାସ

ଜଗତରେ କେବେ କାହାରିକୁ ଯିଏ
ଶତ୍ରୁ ଭାବେ ଦେଖିନାହିଁ
ଅଜାତଶତ୍ରୁ ସେ ଜଗତରେ ସିନା
ତା ଶତ୍ରୁ ଜଗତେ କାହିଁ !

ସାବତ ମା ଦିନେ ପଚାରିଲେ, "ଏତେ
ରାତିଯାକେ କସ କରୁ ?"
ହରି ଉତ୍ତରିଲେ, "ବୟସ୍କ ଲୋକଙ୍କୁ
ପାଠ ପଢାଉଛି ବୋଉ !"

"ମୋତେ ବି ଟିକିଏ ପଢାଇ ଦେ ବାପ
ମୁଁ କି ପାରିବି ନ ପଢି ?"
"ପାରିବୁନି ବୋଲି କିଏ କହିଲା ଲୋ
ସବା ଆଗେ ଯିବୁ ବଢି !"

ପୁଅ ଯାଏଁ ଗୃହୁଁ ମାଆ ଲେଖାପଢା
କରନ୍ତି ବାରଟା ରାତି
ପୁଅ ଆସି ପାଠ ପରୀକ୍ଷା କରନ୍ତି
ଆଗକୁ ବଢାନ୍ତି ନିତି ।

ମାଆର ଆଗ୍ରହ ସ୍ନେହ ଦେଖି ଦିନେ
ପଚାରିଲେ ହରିହର
"ଜନ୍ମକଲା ମା କି ତୋତୁଁ ବଳି ଆଉ
କରିଥାନ୍ତା ସ୍ନେହାଦର ?"

ନିଜ ବୋଉ ପରି ଏ ବୋଉ ବି ଗଲେ
ନିଜ ବାଟେ ସ୍ୱର୍ଗପୁରେ
ଭାଇ ଭଉଣୀଙ୍କ ବୋଝ ସମ୍ଭାଳିଲେ
ହରିହର ହରଷରେ ।

ଉତ୍କଳମଣିଙ୍କ ପ୍ରଭାବ ପଡ଼ୁଛି
ବାଲ୍ୟ କାଳ ଶିକ୍ଷା ଦେଲୁ
ବନ ବିଦ୍ୟାଳୟ ଆଦର୍ଶ ଗୁରୁ ସେ
ଛୁଟି ନାହିଁ ପିଲେ ମେଳୁ ।

ତାଙ୍କ ପୂଜା ପାଠ, ଶୋଇବା ଉଠିବା
ବେଳ ନ ଜାଣନ୍ତି କେହି
ଯେତେବେଳେ ଯାର ଦରକାର ପଡ଼େ
ପାଖରେ ଥାଆନ୍ତି ସେହି ।

X X X

ବେଳ ବଢିଲା ଡାକ ଆସିଲା
ଗାନ୍ଧୀ ଗୋପଙ୍କ ଠାରୁ
"ଜାଗରେ ଜାଗ ଭାରତ ବାସୀ
ବାଁଶୀ ଯାଉ ଦେଲେ ।

ଗୋଲାମ ହୋଇ ରହିବା ନାହିଁ
ସିଂହର ଶିଶୁ ଆମେ
ସ୍ୱାଧୀନତା ଯେ ଜନ୍ମରୁ ସିଦ୍ଧ
ଅଧିକାର ଏ ଭୂମେ ।

ମାରିବା ଲୁଣ କାଟିବା ସୂତା
ଧରି ଅହିଂସା ମନ୍ତ୍ର
ଚୋରା ସର୍କାର ବନ୍ଧୁକ ଆଗେ
ଦେଖାଇ ଦେବା ଶକ୍ତ ।

ବଡ଼ ମଣିଷ ବଡ଼ ସିପାହୀ
ବାନର ସେନା ଯାକ
ତିରଙ୍ଗା ଝଣ୍ଡା ଉଡ଼ାଇ କରି
ଜୟ ଭାରତ ମାତା ।"

ସଭିଙ୍କ ସାଥେ ହରି ଭାଇନା
କାନ୍ଧ ମିଳାଇ ଚଳେ
ବେତ ପ୍ରହାର ଜେଲ ଯାତନା
ଆନନ୍ଦେ ଭୋଗ କଲେ ।

ସତ ଚାଳିଶ ଅଗଷ୍ଟ ମାସ
ସ୍ୱାଧୀନ ହେଲା ଦେଶ
ଗୋଟାଏ ଦେଶ ଦୁଭାଗ ହେଲା
ଦେଇ ଅଭୁଲା କ୍ଳେଶ ।

ଅଠଚାଳିଶ ଜାନୁୟାରୀର
ତିରିଶ ତାରିଖରେ
ମହାତ୍ମା ଗାନ୍ଧୀ ହେଲେ ସମାଧ
ଏ ଦେଶ ମାଟି ପରେ ।

X X X X X X

ବାହାରିଲେ ତନ୍ମେ ସନ୍ଥ ବିନୋବାଜୀ
ଆର୍ଥିକ ସମତା ପାଇଁ
ଭୂମିଦାନ ପୁଣି ଗ୍ରାମଦାନ କାମେ
କର୍ମୀ ହେଲେ ସର୍ବୋଦୟୀ ।

ପଦଯାତ୍ରା କରି ପୂରା ଭାରତରେ
ଦେଲେ ନୂତନ ଖବର
ହରି ଭାଇନା ବି ଡେଇଁଲେ ସେ ରଣେ
ନଥିଲା ଶକ୍ତି ଦୃଷ୍ଟିର ।

ବାଟେ ଝୁଣ୍ଟିଲେ ସେ କେବେ ଯଦି 'ଆହା'
ବୋଲି କହୁଥିଲେ କେହି
କହୁଥିଲେ, "ଏ ମୋ ପ୍ରାୟଶ୍ଚିତ୍ତ ପରା
ଦୁଃଖ କର କାହିଁ ପାଇଁ ।

ଠକ୍‌କର ବାପାଙ୍କୁ ଦିଶୁଥିଲା ନାହିଁ
ବୋଲି କଣ୍ଟବାଟେ ନେଲୁ,
ବଳ ହାଡ଼ରେ କି ଭୁଲି ପାରିବେ ସେ ?
କଚଡ଼ା ଖୁଆଇଥିଲୁ ।"

ଦୃଷ୍ଟି ଶକ୍ତି ସାଥେ ସ୍ମରଣ ଶକ୍ତି ବି
ଲୋପ ହେଲା ଧୀରେ ଧୀରେ
ମାଆ ରମା ଦେବୀ ନିଆରା ସ୍ଥାନରେ
ରଖିଲେ ନିଜ ଯତ୍ନରେ !

ଦେଖା କରିବାକୁ
ଗଲେ ପଚାରନ୍ତି
"ରହିବୁ କି ଯିବୁ ଫେରି ?"
'ଫେରିବି' ଶୁଣିଲେ
କହନ୍ତି "ବେଗେ ଯା
ଟିକେଟ୍ ଯିବ ଯେ ସରି ।

ବଡ଼ ଲୋକ ପାଇଁ
ଫାଷ୍ଟ କ୍ଲାସ୍ ଅବା
ସେକେଣ୍ଡ କ୍ଲାସ ଟିକେଟ
ଆମ ପରି କର୍ମୀ
ସେବକଙ୍କ ପାଇଁ
ତୃତୀୟ ଶ୍ରେଣୀ କି ବାଟ ।

ଥୋରିଆ ସାହିରୁ
ବକୁଳ ବନକୁ
ଗଲି ବନା ଆଡମ୍ବରେ
ଟି.ଭି., ରେଡ଼ିଓର
କିବା ଦରକାର
ପଞ୍ଚସଖା ଗ୍ରହଣରେ ।

କାହିଁ ଲୁଚିଗଲ
ହେ ପୂଜ୍ୟ ଆଚାର୍ଯ୍ୟ !
ମାଆ ପରି ସ୍ନେହ ଦେଇ
କର୍ମୀ ଜୀବନର
ନାନା ଜଞ୍ଜାଳକୁ-
ଭୁଲାଇବ କଥା କହି ।

ରେଳରେ ବସ୍‌ରେ
ଯାଉଥିବା ବେଳେ
ମାଗି ଦେଲେ ଅନ୍ନଟିଏ
ଥଳୀରେ ଦୂରାଇ
ହାତ କିଏ ଦେବ
ଯାହା ପଡ଼ିଯିବ ହାତେ ।

ସାଥୀ କର୍ମୀଙ୍କର
ନିନ୍ଦା କରିବାର
କେବେ ଶୁଣିନାହିଁ କାନେ
ନିଜ ଛଡ଼ା ଅନ୍ୟ-
ମାନଙ୍କ ମୁହଁରେ
ଶାନ୍ତେକିହ୍ନା ହୁଅ ଜାଣେ ।

ହରିଜନ ସେବା
ମଉଳିକ ଶିକ୍ଷା
ନାରୀ ଶିକ୍ଷା ରୋଗୀ ସେବା
ବନ୍ୟା ଦୁର୍ଭିକ୍ଷର
କରାଳ କବଳୁଁ
ଲୋକଙ୍କୁ ଉଦ୍ଧାର ନେବା ।

ଗୀତା ଭାଗବତ ପଢ଼ି ପଢ଼ାଇବା
ଶାନ୍ତି ବାଣୀ ବଢ଼ାଇବା
ସବୁଥିରେ ତୁମେ ଆଗୁଆ ସୈନିକ
ସ୍ଥାନ ଅର୍ଦ୍ଧ କାହିଁ ତବା ।
ମଦପିଆ ଆଉ ସିନେମା ଦେଖିବା
ମଜା ନ ଜାଣିଲ କ୍ଷଣେ
ସିନେମା ଦୁଆରେ ସତ୍ୟାଗ୍ରହ କଥା
କହୁଥିଲ ଶେଷ ଦିନେ ।
ଆଜ୍ଜିକ ଜ୍ୱରେ ବି ଫଳ ରସ ଟୋପେ
ନ ନେଲ ପାଟି ପାଖକୁ
କହିଲ, "ଅସଂଖ୍ୟ ଗରିବ ଲୋକଙ୍କୁ
ଦେଇ ପାରନ୍ତି କି ତାଙ୍କୁ ?"
ଭୀଷ୍ମ, ଦ୍ରୋଣ, କର୍ଣ୍ଣ ପରି ସେନାପତି ଯୋଦ୍ଧା
ସ୍ୱାଧୀନତା ସଂଗ୍ରାମର
ଅନେକ ଗଲେଣି ଅଛୁ କେଇଜଣ
ତାଙ୍କ ପାଦଧୂଳି ଗାର !
ଆମ ଆଗେ ଧାଡ଼ି ନୂତନ ଯୁଗର
ନୂତନ ସୈନାପତି ମାନେ
ତୁମ ତ୍ୟାଗ ସେବା ଆଲୋକିତ କରୁ
ଆମ ପଥ ପ୍ରତିକ୍ଷଣେ ।
କାଳ ସର୍ବଜୟୀ ପାର୍ଥିବ ବିନଷ୍ଟ
ତାର ପ୍ରତି ପଦକ୍ଷେପେ
ଗୁଣୀ ଗୁଣ ତାର ହୃଦୟ ଫଳକେ
ଅଙ୍କା ଥାଏ ଜ୍ୟୋତି ରୂପେ ।
ଦିଅ ଆଶୀର୍ବାଦ ଚକ୍ଷୁ ଥାଇ ଅନ୍ଧ
ନ ହେଉ ଯେପରି ଆମେ
ବିଶ୍ୱ ରାଜପଥେ ସାମ୍ୟ ମୈତ୍ରୀ ପ୍ରେମେ
ଲାଗୁ ବିଶ୍ୱହିତ - କାମେ ।

ଗ୍ରାମ କୁଆଁସ
ପୋ: ଅ: ଭଦ୍ରକ
ଜି. ବାଲେଶ୍ୱର

# ଆଚାର୍ଯ୍ୟଙ୍କ ଗୀତାନୁବାଦର ବୈଶିଷ୍ଟ୍ୟ

**ଡକ୍ଟର କୁମୁଦିନୀ ମିଶ୍ର**
ଅଧ୍ୟାପିକା, ଓଡ଼ିଆ ବିଭାଗ
ରମାଦେବୀ ମହିଳା ମହାବିଦ୍ୟାଳୟ

'ଶ୍ରୀମଦ୍ ଭଗବଦ୍ ଗୀତା' ଏକ ସ୍ୱତନ୍ତ୍ର ଗ୍ରନ୍ଥ ନୁହେଁ । 'ମହାଭାରତ' ଅନ୍ତର୍ଭୁକ୍ତ 'ଭୀଷ୍ମପର୍ବ'ର ଏକ ଉପପର୍ବ । ଭୀଷ୍ମପର୍ବର ପ୍ରଥମ ଉପପର୍ବଟି ବାରଗୋଟି ଅଧ୍ୟାୟ ବିଶିଷ୍ଟ 'ଭୂମିପର୍ବ' ଓ ଦ୍ୱିତୀୟ ଉପପର୍ବଟି ତିରିଶଗୋଟି ଅଧ୍ୟାୟ ବିଶିଷ୍ଟ 'ଭଗବଦ୍ ଗୀତା' ପର୍ବ । ଏହି ଦ୍ୱିତୀୟ ଉପପର୍ବର ଶେଷ ଅଠରଗୋଟି ଅଧ୍ୟାୟ ହେଉଛି ସର୍ବଜନାଦୃତ 'ଶ୍ରୀମଦ୍ ଭଗବଦ୍ ଗୀତା', ଯାହାକି ସମଗ୍ର 'ମହାଭାରତ'ର କେନ୍ଦ୍ରବିନ୍ଦୁ ତଥା 'ମହାଭାରତ ରୂପୀ ରତ୍ନହାରର ମଧ୍ୟ ମଣି' ରୂପେ ସ୍ୱୀକୃତ । 'ମହାଭାରତ'ରେ ସମୁଦାୟ ୧୬ଗୋଟି ଗୀତାର ନାମୋଲ୍ଲେଖ ଥିଲେ ହେଁ, କେବଳ 'ଗୀତା' କହିଲେ ସମସ୍ତେ 'ଶ୍ରୀମଦ୍ ଭଗବଦ୍ ଗୀତା'କୁ ହିଁ ବୁଝନ୍ତି । ସୁତରାଂ, ଏହା ଏକ ସ୍ୱତନ୍ତ୍ର ଗ୍ରନ୍ଥ ରୂପେ ସମଗ୍ର ପୃଥିବୀରେ ପ୍ରସିଦ୍ଧି ଲାଭ କରିଛି ।

'ଭଗବଦ୍ ଗୀତା'ର କ୍ଷୁଦ୍ର କଳେବରରେ ଆର୍ଯ୍ୟ ଶାସ୍ତ୍ରର ସକଳ ତତ୍ତ୍ୱ, ଆର୍ଯ୍ୟ ଧର୍ମର ସାର ନିର୍ଯ୍ୟାସ ନିହିତ, ଋକ୍, ସାମ ଓ ଯଜୁର୍ବେଦ ବର୍ଣ୍ଣିତ ଜ୍ଞାନ, ଉପାସନା ଓ ଭକ୍ତିର ସମନ୍ୱିତ ରୂପ ଏଥିରେ ପ୍ରକଟିତ । ବୈଦିକ ଶାସ୍ତ୍ରର 'ପ୍ରସ୍ଥାନ ତ୍ରୈ'—ଶ୍ରୁତି ପ୍ରସ୍ଥାନ, ସ୍ମୃତି ପ୍ରସ୍ଥାନ ଓ ନ୍ୟାୟ ପ୍ରସ୍ଥାନ -ଯଥାକ୍ରମେ ଉପନିଷଦ, ଗୀତା ଓ ବ୍ରହ୍ମସୂତ୍ରକୁ ବୁଝାଯାଏ । କିନ୍ତୁ 'ଶ୍ରୀମଦ୍ ଭଗବଦ୍ ଗୀତା' ଏକାଧାରରେ ଉପନିଷଦ, ଗୀତା ଓ ବ୍ରହ୍ମସୂତ୍ର ହୋଇଥିବାରୁ ଏହାର ପ୍ରତ୍ୟେକ ଅଧ୍ୟାୟ ଶେଷରେ— "ଇତି ଶ୍ରୀମଦ୍ ଭଗବଦ୍ ଗୀତାସୁ ଉପନିଷଦସୁ ବ୍ରହ୍ମ ବିଦ୍ୟାୟାଂ ଯୋଗଶାସ୍ତ୍ରେ" ଉଲ୍ଲେଖ ହୋଇଛି । ଭଗବଦ୍ ଗୀତାର ଧର୍ମ ଯଥାର୍ଥରେ ସାର୍ବଜନୀନ ମାନବଧର୍ମ । କାରଣ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଉଚିତ ମାର୍ଗରେ ଯିବା ପାଇଁ ଓ ଉଚିତ କର୍ତ୍ତବ୍ୟ ସମ୍ପାଦନ ପାଇଁ ଏହା ଜାତି-ଧର୍ମ ନିର୍ବିଶେଷରେ ପ୍ରତ୍ୟେକ ମନୁଷ୍ୟର ପଥ ପ୍ରଦର୍ଶକ ଭାବେ କାର୍ଯ୍ୟ କରେ ।

'ଭଗବଦ୍ ଗୀତା' ନିର୍ଦ୍ଦେଶିତ ତତ୍ତ୍ୱବାଣୀ ମନୁଷ୍ୟର ଜୀବନ ଯାତ୍ରା ପାଇଁ ଏକାନ୍ତ ଆବଶ୍ୟକ ହେଲେହେଁ, ତାହା ସଂସ୍କୃତରେ ଲେଖା ଯାଇଥିବାରୁ ସର୍ବଜନ ବୋଧ୍ୟ ନୁହେଁ । ତେଣୁ ପୃଥିବୀର ବିଭିନ୍ନ ଭାଷାରେ ଏହି ଅମୂଲ୍ୟ ଗ୍ରନ୍ଥଟିର ଅନୁବାଦ କରାଯାଇ ତାହାର ଟୀକା ପ୍ରସ୍ତୁତ କରାଯାଇଛି । ଭାରତବର୍ଷରେ ଶଙ୍କରାଚାର୍ଯ୍ୟ, ରାମାନୁଜ, ଆନନ୍ଦ ଗିରି, ଶ୍ରୀଧର ସ୍ୱାମୀ, ମଧୁସୂଦନ ସରସ୍ୱତୀ, ନୀଳକଣ୍ଠ ଚତୁର୍ବେଦୀ ପ୍ରମୁଖ ପଣ୍ଡିତମାନଙ୍କ ଠାରୁ

ଆରମ୍ଭ କରି ବାଲ୍‌ଗଙ୍ଗାଧର ତିଳକ୍, ରାଧାକ୍ରିଷ୍ଣନ୍, ମଦନମୋହନ ମାଳବ୍ୟ, ମହାତ୍ମା ଗାନ୍ଧୀଙ୍କ ପରି ରାଷ୍ଟ୍ରନୀତିଜ୍ଞ-ମାନେ ଗୀତାଲୋଚନାରେ ବ୍ରତୀ ହୋଇଛନ୍ତି ।

ଓଡ଼ିଆ ଭାଷାରେ 'ଗୀତା'ର ଅନୁବାଦ ତଥା ବ୍ୟାଖ୍ୟା ପ୍ରସ୍ତୁତ କରିବାରେ ବିହାରୀଲାଲ ପଣ୍ଡିତ, ପଣ୍ଡିତ ନୀଳକଣ୍ଠ ଦାସ, ବୈରାଗୀ ଚରଣ ମିଶ୍ର ଓ ଆଚାର୍ଯ୍ୟ ହରିହରଙ୍କ ନାମ ଉଲ୍ଲେଖ ଯୋଗ୍ୟ ।

ଆଚାର୍ଯ୍ୟ ହରିହରଙ୍କ ଗୀତାରେ ତିଳକଙ୍କ 'ଗୀତା ରହସ୍ୟ'ରେ ବର୍ଣ୍ଣିତ ତତ୍ତ୍ୱ ନାହିଁ । ପଣ୍ଡିତ ନୀଳକଣ୍ଠଙ୍କ ଗୀତା ଭାଷ୍ୟରେ ଦିଆଯାଇଥିବା ବିରାଟ ଉପକ୍ରମଣିକା ନାହିଁ । ବିହାରୀଲାଲ ପଣ୍ଡିତଙ୍କ 'ଗୀତା'ର ବିଶଦ ବ୍ୟାଖ୍ୟା ନାହିଁ କିମ୍ବା ବୈରାଗୀ ମିଶ୍ରଙ୍କ 'ଗୀତା'ରେ ବର୍ଣ୍ଣିତ ଗୁହ୍ୟଶାସ୍ତ୍ରର ବିଶେଷ ଚର୍ଚ୍ଚା ନାହିଁ । କିନ୍ତୁ ନିତିଦିନିଆ କଥିତ ସରଳ ଓଡ଼ିଆରେ ଗୀତାର ତତ୍ତ୍ୱ ନିଷ୍ଠ ଶ୍ଳୋକ ଗୁଡ଼ିକର ସହଜ ଓ ସଂକ୍ଷିପ୍ତ ଅର୍ଥ ପ୍ରକାଶ କରି ଓଡ଼ିଆ ଜନ-ମାନସକୁ ଗୀତାଭିମୁଖୀ କରିବାରେ ଆଚାର୍ଯ୍ୟ ମହାଶୟଙ୍କ ଉଦ୍ୟମ ନିଶ୍ଚିତ ଭାବରେ ପ୍ରଶଂସନୀୟ । ତାଙ୍କ ଅନୂଦିତ ସର୍ବଜନ ବୋଧ ଏହି ଗୀତା 'ପକେଟ୍ ଗୀତା' ଭାବେ ଓଡ଼ିଶାର ଘରେ ଘରେ ଲୋକପ୍ରିୟତା ଅର୍ଜନ କରିଛି । ଫଳରେ ତାଙ୍କ ଗୀତାର ବହୁ ସଂସ୍କରଣ ଅଦ୍ୟାବଧି ପ୍ରକାଶ ପାଇଛି ।

ଆଚାର୍ଯ୍ୟ ହରିହର ତାଙ୍କ 'ଗୀତା'ର ସୂଚୀପତ୍ରରେ ହିଁ ଗୀତା ବର୍ଣ୍ଣିତ ବିଷୟ ଗୁଡ଼ିକୁ ସଂକ୍ଷେପରେ ସୂଚାଇ ଦେଇଛନ୍ତି । ପ୍ରଥମ ଅଧ୍ୟାୟର 'ଅର୍ଜ୍ଜୁନ ବିଷାଦ ଯୋଗ' ଠାରୁ ୧୮ଶ ଅଧ୍ୟାୟର 'ମୋକ୍ଷ ଯୋଗ' ପର୍ଯ୍ୟନ୍ତ ଗୀତାର ତତ୍ତ୍ୱ କଥା ମାନ କେଉଁ କେଉଁ ଶ୍ଳୋକରେ ବର୍ଣ୍ଣିତ ତାହାର ଏକ ସଂକ୍ଷିପ୍ତ ପରିଚୟ ତାଙ୍କ ସୂଚୀପତ୍ରରୁ ହିଁ ମିଳିଥାଏ । ଅଭିଧାନରୁ ଇପ୍‌ସିତ ଶବ୍ଦର ପରିଚୟ ସଙ୍ଗେ ସଙ୍ଗେ ମିଳିଯିବା ପରି ଆଚାର୍ଯ୍ୟ ମହାଶୟଙ୍କ ସୂଚୀପତ୍ରରୁ ଗୀତାର ଇପ୍‌ସିତ ତତ୍ତ୍ୱ ନିହିତ ଶ୍ଳୋକଟି ଅନାୟାସରେ ମିଳିଥାଏ । ଯେପରି—

କୁଳକ୍ଷୟ ପ୍ରଭୃତି ପାତକର ପରିଣାମ—୧ମ ଅଧ୍ୟାୟ/୩୮ରୁ ୪୪ ଶ୍ଳୋକ
ଜୀବାତ୍ମାର ନିତ୍ୟତ୍ୱ—୨/୧୨ ଶ୍ଳୋକ
ଜ୍ଞାନ ଓ କର୍ମର କଥା—୨/୩୯ ଶ୍ଳୋକ
କର୍ମଯୋଗର ମୂଳସୂତ୍ର—୨/୪୭ ଶ୍ଳୋକ
ବ୍ରାହ୍ମୀସ୍ଥିତି—୨/୭୧-୭୨ ଶ୍ଳୋକ
କର୍ମଯୋଗର ଶ୍ରେଷ୍ଠତା—୩/୩ରୁ ୮ ଶ୍ଳୋକ
ଭଗବାନଙ୍କ ଅବତାର କାହିଁକି ?—୪/୭-୮ ଶ୍ଳୋକ
ଜ୍ଞାନ ଲାଭର ଉପାୟ-ଶ୍ରଦ୍ଧା, ବିଶ୍ୱାସ, ଇନ୍ଦ୍ରିୟ ସଂଯମ—୪/୩୯ ଶ୍ଳୋକ
ସନ୍ନ୍ୟାସ ନା କର୍ମଯୋଗ-କିଏ ଶ୍ରେଷ୍ଠ ?—୫/୧ ଶ୍ଳୋକ
ଭକ୍ତିମାନ କର୍ମଯୋଗୀର ସର୍ବଶ୍ରେଷ୍ଠତା—୬/୪୭ ଶ୍ଳୋକ ଇତ୍ୟାଦି

ଆଚାର୍ଯ୍ୟଙ୍କ ଗୀତାନୁବାଦର ଗୋଟିଏ ବିଶେଷତ୍ୱ ହେଉଛି, ଶ୍ରୀକୃଷ୍ଣ ଯେତେବେଳେ ଅର୍ଜ୍ଜୁନଙ୍କୁ କୌଣସି ତତ୍ତ୍ୱର କଥା କହନ୍ତି, ଅର୍ଜ୍ଜୁନଙ୍କ ମନରେ କେଉଁ ପ୍ରଶ୍ନ ବା କେଉଁ ସନ୍ଦେହ ଉତ୍ଥିତ ହେଲେ ଶ୍ରୀକୃଷ୍ଣ ସେହି ତତ୍ତ୍ୱର କଥାଟି କହିବେ ତାହା ସେ ବନ୍ଧନୀ ଭିତରେ ଲେଖି ଦେଇଛନ୍ତି । ଫଳରେ ବିଭିନ୍ନ ତତ୍ତ୍ୱର ପ୍ରାସଙ୍ଗିକତା ସମ୍ପର୍କରେ ପାଠକ ସହଜରେ ଅବଗତ ହୁଏ । ଉଦାହରଣ ସ୍ୱରୂପ ଆତ୍ମାର ଅମରତ୍ୱ ସମ୍ପର୍କରେ କୃଷ୍ଣ ଅର୍ଜ୍ଜୁନଙ୍କୁ ବୁଝାଇଲେ— "ତୁମେ, ମୁଁ ଆଉ ଏହି ରାଜାମାନେ ପୂର୍ବରେ ଥିଲେଇଁ, ବର୍ତ୍ତମାନ ଅଛେଇଁ ଓ ପରେ ମଧ୍ୟ ରହିବା ।" (ଗୀତା ୨/୧୨ ଶ୍ଲୋକ) ଏଥିରେ ଅର୍ଜ୍ଜୁନଙ୍କ ମନରେ ପ୍ରଶ୍ନ ଉଠିବା ସ୍ୱାଭାବିକ ଯେ, ଆମେ କିପରି ଭଗବାନ କୃଷ୍ଣଙ୍କ ସହ ଅମରତ୍ୱ ଲାଭ କରିବା ? ଅର୍ଜ୍ଜୁନଙ୍କର ଏହି ପ୍ରଶ୍ନଟି ଆଚାର୍ଯ୍ୟ ହରିହର ବନ୍ଧନୀ ଭିତରେ ପ୍ରାଞ୍ଜଳ ଭାବେ ଲେଖିଦେଲେ (ତୁମେ ଈଶ୍ୱର ତୁମର ଜନ୍ମ ମୃତ୍ୟୁ ନାହିଁ ସତ, କିନ୍ତୁ ଜୀବ ମାନଙ୍କରତ ଅଛି ।) ଏହାର ଉତ୍ତରରେ ଶ୍ରୀକୃଷ୍ଣ କହିଲେ—

"ଦେହିନୋଽସ୍ମିନ୍ ଯଥାଦେହେ କୌମାରଂ ଯୌବନଂଜରା
ତଥା ଦେହାନ୍ତର ପ୍ରାପ୍ତିର୍ଧୀର ସ୍ତତ୍ର ନ ମୁହ୍ୟତି ।" (୨/୧୩ ଶ୍ଲୋକ)

ଅର୍ଥାତ୍, ଯେପରି ଏହି ସ୍ଥୂଳ ଦେହରେ ଜୀବର କୌମାର, ଯୌବନ ଓ ଜରା (ଏହି ତିନି ଅବସ୍ଥା କ୍ରମରେ ହୁଏ), ସେହିପରି ଅନ୍ୟ ଦେହ ପ୍ରାପ୍ତି ମଧ୍ୟ ହୁଏ । ତେଣୁ ବିବେକୀମାନେ ସେଥିରେ ମୋହିତ ହୁଅନ୍ତି ନାହିଁ ।

ଅର୍ଥର ପ୍ରାଞ୍ଜଳତା ଆଚାର୍ଯ୍ୟ ମହାଶୟଙ୍କ 'ଗୀତା'ର ଅନ୍ୟତମ ବୈଶିଷ୍ଟ୍ୟ । ଏଥିପାଇଁ ମଧ୍ୟ ଗୋଟିଏ ଉଦାହରଣ ଦିଆଯାଇପାରେ । ସାଂଖ୍ୟ ଯୋଗର ତତ୍ତ୍ୱ କହିବା ପରେ କର୍ମଫଳ—ଆଶା ତ୍ୟାଗ କରିବା ପାଇଁ ଶ୍ରୀକୃଷ୍ଣ ଉପଦେଶ ଦେଇଛନ୍ତି—

"କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚନ
ମା କର୍ମ ଫଳ ହେତୁ ର୍ଭୂର୍ମାତେ ସଙ୍ଗୋଽସ୍ତ୍ୱ କର୍ମଣି ।" (୨/୪୭ ଶ୍ଲୋକ)

ଏ ଶ୍ଲୋକର ଅର୍ଥ ବୁଝାଇବା ପ୍ରସଙ୍ଗରେ ଆଚାର୍ଯ୍ୟ ହରିହର କର୍ମଯୋଗର ଚାରିସୂତ୍ର ଅତି ପ୍ରାଞ୍ଜଳଭାବେ ଦର୍ଶାଇଛନ୍ତି । ସେ ଚାରିଗୋଟି ସୂତ୍ର ହେଲା—

୧) ତୁମର କର୍ମରେ ହିଁ ଅଧିକାର ହେଉ,
୨) କେବେ ଯେପରି କର୍ମ ଫଳରେ ତୁମର ଅଧିକାର ନହେଉ,
୩) ତୁମେ କର୍ମ ଫଳରେ ହେତୁ ଭୂତ ହୁଅ ନାହିଁ, ଅର୍ଥାତ, ଫଳ ଯେପରି ତୁମର କର୍ମ ପ୍ରବୃତ୍ତିର ହେତୁ ନ ହୁଏ ।
୪) କର୍ମର ଅକରଣରେ (କର୍ମ ତ୍ୟାଗରେ) ଯେପରି ତୁମର ଆସକ୍ତି ନହୁଏ ।

'ଗୀତା' ବର୍ଣ୍ଣିତ ତତ୍ତ୍ୱର ଆଚାର୍ଯ୍ୟ ମହାଶୟ ଯେଉଁ ଅର୍ଥ କରିଛନ୍ତି ତାକୁ ଅନ୍ୟ ଭାଷ୍ୟକାରମାନଙ୍କ ଅର୍ଥ ସହ ତୁଳନା କରି ଦେଖିଲେ ଆଚାର୍ଯ୍ୟଙ୍କ ଅର୍ଥର ସରଳୀକୃତ ରୂପ ସହଜରେ ବାରି ହୁଏ । ବିହାରୀଲାଲ ପଣ୍ଡିତ ଓ ପଣ୍ଡିତ ନୀଳକଣ୍ଠ 'ଗୀତା'ର ପ୍ରତ୍ୟେକ ଶ୍ଳୋକର ଓଡ଼ିଆ ଅନୁବାଦ ଦେବା ପରେ ତାହାର ଅଧିକ ବିଶ୍ଳେଷଣ ପାଇଁ ବିଶେଷ ବ୍ୟାଖ୍ୟା ବା ବ୍ୟାଖ୍ୟା ସୂଚନା ଦେଇଛନ୍ତି । ଆଚାର୍ଯ୍ୟ ହରିହର ଅନୁବାଦ ପରେ ଏପରି କୌଣସି ବ୍ୟାଖ୍ୟା ଦେଇ ନାହାନ୍ତି ସତ, କିନ୍ତୁ ସଂସ୍କୃତ ଶ୍ଳୋକର ସରଳ ଅନ୍ୱୟ କରି ଏବଂ ନିତ୍ୟକଥିତ ଓଡ଼ିଆରେ ତାହାର ଅନୁବାଦ କରି ସେ ଅର୍ଥକୁ ବେଶ୍ ପ୍ରାଞ୍ଜଳ କରି ପାରିଛନ୍ତି । ଯେପରି—

ନିୟତଂ କୁରୁ କର୍ମ ତ୍ୱଂ କର୍ମ ଜ୍ୟାୟୋ ହ୍ୟକର୍ମଣଃ
ଶରୀର ଯାତ୍ରାପିଚ ତେ ନ ପ୍ରସିଦ୍ଧ୍ୟେଦକର୍ମଣଃ" (୩/୮ଶ୍ଳୋକ)

ଏହାର ଅନ୍ୱୟ ସେ ନିମ୍ନୋକ୍ତ ଭାବେ କରିଛନ୍ତି—

"ତ୍ୱଂ ନିୟତଂ (ନିତ୍ୟ ଅବଶ୍ୟ କର୍ତ୍ତବ୍ୟ ତଥା ବିହିତଂ) କର୍ମକୁରୁ ହି (ଯତଃ) ଅକର୍ମଣଃ (କର୍ମାକରଣାତ୍) କର୍ମଂ (କର୍ମ କରଣଂ) ଜ୍ୟାୟଃ (ଶ୍ରେଷ୍ଠଂପ୍ରଶଂସ୍ୟତରଂ) (ଅନ୍ୟଥା) ଅକର୍ମଣଃ (ସର୍ବକର୍ମ-ଶୂନ୍ୟସ୍ୟ) ତେ (ତବ) ଶରୀର ଯାତ୍ରାପି (ଶରୀର ନିର୍ବାହୋଽପି) ନ ପ୍ରସିଧ୍ୟେତ୍ (ନ ଭବେତ୍) । ଏପରି ପାଠକମାନଙ୍କୁ ବୁଝାଇ ବୁଝାଇ ଅନ୍ୱୟ କରିବା ପରେ ତାହାର ଅନୁବାଦ ଅତି ସରଳ ଭାଷାରେ କହିଛନ୍ତି— "ତୁମେ ଇନ୍ଦ୍ରିୟମାନଙ୍କୁ ସଂଯମ କରି ନିୟମିତ କାମ କର, କାହିଁକିନା କର୍ମ ନ କରିବା ଅପେକ୍ଷା କର୍ମ କରିବା ଉତ୍ତମ । ସବୁ ପ୍ରକାର କର୍ମ ପରିତ୍ୟାଗ କଲେ ତୁମ ଶରୀର ଯାତ୍ରା ନିର୍ବାହ ସହଜ ହେବ ନାହିଁ ।

କର୍ମଯୋଗୀର ଇନ୍ଦ୍ରିୟରେ କର୍ମ, ମନରେ ସନ୍ନ୍ୟାସ । ସେଥିପାଇଁ ସେ ନିର୍ଲିପ୍ତ, ମୁକ୍ତ ଓ ଶାନ୍ତ । ଏହି ଗୂଢ଼ ତତ୍ତ୍ୱଟି ଗୀତାରେ ନିମ୍ନୋକ୍ତ ଭାବେ ଉପସ୍ଥାପିତ—

"ନୈବ କିଞ୍ଚିତ୍ କରୋମୀତି ଯୁକ୍ତୋ ମନ୍ୟେତ ତତ୍ତ୍ୱବିତ୍
ପଶ୍ୟନ୍ ଶୃଣ୍ୱନ୍ ସ୍ପୃଶନ୍ ଜିଘ୍ରନ୍ନଶ୍ନନ୍ ଗଚ୍ଛନ୍ ସ୍ୱପନ୍ ଶ୍ୱସନ୍" (୫/୮ ଶ୍ଳୋକ)

କର୍ମ କରି ମଧ୍ୟ କର୍ମରେ ନିର୍ଲିପ୍ତ ରହିବା କଥାଟି ସାଧାରଣ ବୋଧଗମ୍ୟ ନୁହେଁ । ଏ କଥାଟି ସହଜରେ ବୁଝାଇବାକୁ ଯାଇ ସେ କହନ୍ତି, କର୍ମରେ କର୍ତ୍ତୃତ୍ୱ ଅଭିମାନ (ମୁଁ ସବୁ କରୁଛି ଭାବ) ନଥିଲେ ଏହା ସମ୍ଭବ ହୋଇ ପାରିବ । ତାଙ୍କ ଭାଷାରେ— "କର୍ମଯୋଗରେ ଯୁକ୍ତ ବ୍ୟକ୍ତି (ଜ୍ଞାନୀ) ତତ୍ତ୍ୱବିଦ୍ ହୋଇ ଦର୍ଶନ, ଶ୍ରବଣ, ସ୍ପର୍ଶନ, ଘ୍ରାଣ, ଭୋଜନ, ଗମନ, ନିଦ୍ରା, ଶ୍ୱାସ, ଆଳାପ, ତ୍ୟାଗ, ଗ୍ରହଣ, ଉନ୍ମେଷ ଓ ନିମେଷ-ଏ ସବୁ କାର୍ଯ୍ୟ କରି ମଧ୍ୟ 'ଇନ୍ଦ୍ରିୟମାନେ ନିଜ ନିଜ ବିଷୟରେ ବର୍ତ୍ତମାନ ରହି ଏ ସବୁ କରୁଛନ୍ତି, ମୁଁ କିଛି କରୁନାହିଁ'—

ଏପରି ମନେ କରନ୍ତି । ଏହିପରି କର୍ମ କରି କର୍ମରେ ନିର୍ଲିପ୍ତ ରହିବା କଥାଟିକୁ 'ଗୀତା'ରେ ପାଣିରେ ରହି ପଦ୍ମପତ୍ର ପାଣିରେ ଲିପ୍ତ ନହେବା କଥା ସହ ତୁଳନା କରାଯାଇଛି ।

"ବ୍ରହ୍ମଣ୍ୟାଧାୟ କର୍ମାଣି ସଂଗଂତ୍ୟକ୍ତ୍ୱା କରୋତି ଯଃ
ଲିପ୍ୟତେ ନ ସ ପାପେନ ପଦ୍ମପତ୍ରମିବାମ୍ଭସା ।" (୫।୧୦ ଶ୍ଳୋକ)

ଏହାର ଅର୍ଥ କରି ଆଚାର୍ଯ୍ୟ କହନ୍ତି, କର୍ତ୍ତୃତ୍ୱ ଅଭିମାନ ଥିଲେ କର୍ମରେ ବନ୍ଧନ ନିଶ୍ଚିତ ଭାବେ ଆସିବ, କର୍ମରେ ସନ୍ନ୍ୟାସ ଆସିବ ନାହିଁ । ତେଣୁ 'ମୁଁ କରୁଛି' —ଏ କର୍ତ୍ତୃତ୍ୱ ଅଭିମାନ ତ୍ୟାଗ ପୂର୍ବକ ଯେ ପରମେଶ୍ୱରଙ୍କଠାରେ କର୍ମ ସମର୍ପଣ କରି (ତାହାର ଫଳରେ) ଆସକ୍ତି ପରିତ୍ୟାଗ ପୂର୍ବକ କର୍ମ କରନ୍ତି, ପଦ୍ମପତ୍ର ଜଳରେ ରହି ସୁଦ୍ଧା ଜଳଦ୍ୱାରା ଲିପ୍ତ ନହେଲା ପରି ସେ (କର୍ମ ବନ୍ଧନ ହେତୁ ପୁଣ୍ୟ ପାପାତ୍ମକ) କାର୍ଯ୍ୟରେ ଲିପ୍ତ ହୁଅନ୍ତି ନାହିଁ ।

ଅନ୍ୟ ବ୍ୟାଖ୍ୟାକାରଙ୍କ ଠାରୁ ଆଚାର୍ଯ୍ୟ ହରିହରଙ୍କ ଗୀତାନୁବାଦ କିପରି ଅଧିକ ସରଳ ତାହା ଦର୍ଶାଇବା ପାଇଁ ଗୋଟିଏ ଉଦାହରଣ ଦିଆଯାଇପାରେ । ବିଷୟାସକ୍ତି ତ୍ୟାଗରେ ମୋକ୍ଷ ଆଉ ଆସକ୍ତିରେ ବନ୍ଧନ । ଏଥିପାଇଁ ବିଷୟାସକ୍ତିରୁ ମୁକ୍ତ ରହି ନିଜକୁ ଉଦ୍ଧାର କରିବାକୁ ଗୀତାରେ ଉପଦେଶ ଦିଆଯାଇଛି—

"ଉଦ୍ଧରେଦାତ୍ମନାତ୍ମାନଂ ନାତ୍ମାନମବ ସାଦୟେତ୍
ଆତ୍ମୈବ ହ୍ୟାତ୍ମନୋ ବନ୍ଧୁରାତ୍ମୈବ ରିପୁରାତ୍ମନଃ ।" (୬/୫ ଶ୍ଳୋକ)

ଏହାର ଅନୁବାଦ କରି ବିହାରି ଲାଲ ପଣ୍ଡିତ ଲେଖିଲେ— "ବିବେକ ଯୁକ୍ତ (ଆତ୍ମା) ମନଦ୍ୱାରା ଆପଣାକୁ ଉଦ୍ଧାର କରିବ । ଆତ୍ମାକୁ ଅବସନ୍ନ (ଅଧୋଗାମୀ) କରିବ ନାହିଁ । କାହିଁକିନା ଆତ୍ମା (ମନ) ଅବସ୍ଥା ବିଶେଷରେ ଆପଣାର ମିତ୍ର ଓ ଶତ୍ରୁ ହୁଏ ।"

ପଣ୍ଡିତ ନୀଳକଣ୍ଠଙ୍କ ଅନୁବାଦ ଏହିପରି— (ଦେହ, ଇନ୍ଦ୍ରିୟ, ମନ, ବୁଦ୍ଧିରେ ବୁଡ଼ି ରହିଥିବା) ଆତ୍ମାକୁ (ବୁଦ୍ଧିରେ ଅଶ୍ରିତ) ଆତ୍ମଜ୍ଞାନରେ ଉପରକୁ ଉଠାଇବ । ଆତ୍ମାକୁ ଦେହାଦିରେ ଲଟପଟ କରି ତଳକୁ ପକାଇଦେବନାହିଁ । କାହିଁକି ନା ଆତ୍ମା ଏକା ଆତ୍ମାର ବନ୍ଧୁ, ଆତ୍ମା ଏକା ଆତ୍ମାର ଶତ୍ରୁ ।"

କିନ୍ତୁ ଆଚାର୍ଯ୍ୟ ମହାଶୟ ବିଷୟ ପ୍ରତି ଅନାସକ୍ତ ଆତ୍ମାକୁ ଜୀବର ବନ୍ଧୁ ଓ ବିଷୟାସକ୍ତ ଆତ୍ମାକୁ ଜୀବର ଶତ୍ରୁ କହି ଶ୍ଳୋକଟିକୁ ଅତି ସରଳ ଭାବେ ପାଠକଙ୍କ ବୋଧଗମ୍ୟ କରି ପାରିଛନ୍ତି । ତାଙ୍କ ଭାଷାରେ--- "(ବିବେକଯୁକ୍ତ) ଆତ୍ମା (ମନ) ଦ୍ୱାରା ଆତ୍ମାକୁ (ଜୀବକୁ) (ସଂସାରରୁ) ଉଦ୍ଧାର କରିବ, ଆତ୍ମାର ଅବନତି କରିବ ନାହିଁ । କାରଣ ଅନାସକ୍ତ ମନ (ଆତ୍ମା) ଜୀବର ବନ୍ଧୁ ଓ ବିଷୟାସକ୍ତ ମନ (ଆତ୍ମା) ଜୀବର ଶତ୍ରୁ ।

ଆଚାର୍ଯ୍ୟ ହରିହରଙ୍କ ଅନୁବାଦର ଭାଷା ଠାରୁ ପଣ୍ଡିତ ନୀଳକଣ୍ଠଙ୍କ ଅନୁବାଦର ଭାଷା ଅନେକ ସ୍ଥଳରେ ଅଧିକ ଭାବେ ଲୋକ କଥିତ ସତ, କିନ୍ତୁ ଆଚାର୍ଯ୍ୟଙ୍କ ଅର୍ଥ ପ୍ରକାଶ ଭଙ୍ଗୀଟି ନୀଳକଣ୍ଠଙ୍କ ଅପେକ୍ଷା ଅଧିକ ବୋଧଗମ୍ୟ ମନେ ହୁଏ, ଉଦାହରଣ ସ୍ୱରୂପ ଗୀତାର—

"ମନ୍ମନା ଭବ ମଦ୍ ଭକ୍ତୋ ମଦ୍ୟାଜୀ ମାଂ ନମସ୍କୁରୁ
ମାମେବୈଷ୍ୟସି ଯୁକ୍ତ୍ୱୈବମାତ୍ମାନଂ ମତ୍ପରାୟଣ ।" (୯।୩୪ ଶ୍ଳୋକ)

ଏହାର ଅର୍ଥକରି ନୀଳକଣ୍ଠ ଲେଖିଛନ୍ତି— "ମୋରଠି ମନଦେ, ମତେ ଭଜ୍, ମୋର ପାଇଁ କର୍ମ କର, ମତେ ନମସ୍କାର କର । ଏହିପରି ମତେ ସର୍ବସ୍ୱ କରି ଆତ୍ମାକୁ ମୋରଠି ଲଗାଇଲେ ମତେଇ ପାଇବୁ ।"

'ମତେ ସର୍ବସ୍ୱ କରି ଆତ୍ମାକୁ ମୋରଠି ଲଗାଇଲେ" ଏହାର ଭାଷା ଯେତେ ସରଳ ଭାବ ସେତେ ବୋଧଗମ୍ୟ ନୁହେଁ । ଆଚାର୍ଯ୍ୟ ମହାଶୟ ଏହି କଥାଟିକୁ—"ଏପରି ମନ ଲଗାଇ ମୋ ଆଶ୍ରୟ ଗ୍ରହଣ କଲେ"— ଲେଖି ଭାବଟିକୁ ଅଧିକ ବୋଧଗମ୍ୟ କରିପାରିଛନ୍ତି । ପୂର୍ବୋକ୍ତ ଶ୍ଳୋକର ଅନୁବାଦ କରି ସେ ଲେଖିଛନ୍ତି— "ତୁମେ ମୋ ଠାରେ ଚିତ୍ତ ସମର୍ପଣ କର, ମୋତେ ସେବା କର, ମୋ ପୂଜା ପରାୟଣ ହୁଅ ଏବଂ ମୋତେ ନମସ୍କାର କର । ଏପରି ମନ ଲଗାଇ ମୋ ଆଶ୍ରୟ ଗ୍ରହଣ କଲେ ମତେ ନିଶ୍ଚୟ ପ୍ରାପ୍ତ ହେବ ।"

ପାଶ୍ଚାତ୍ୟ ତତ୍ତ୍ୱବିଦ୍‌ମାନେ ଆକ୍ଷରିକ ଅନୁବାଦ ଅପେକ୍ଷା ଭାବାନୁବାଦ ଉପରେ ଅଧିକ ଗୁରୁତ୍ୱ ଆରୋପ କରିଛନ୍ତି । ମୂଳ ଲେଖକଙ୍କ ଭାବକୁ ଅକ୍ଷୁଣ୍ଣ ରଖି ଓ ସାହିତ୍ୟିକ କଳାର ସୌନ୍ଦର୍ଯ୍ୟ ରକ୍ଷା କରି ମୂଳ ରଚନାକୁ ସ୍ୱକୀୟ ପ୍ରତିଭା ବଳରେ ପ୍ରାଣସ୍ପର୍ଶୀ ଭାବେ ରୂପାନ୍ତରିତ କରିବାରେ ହିଁ ଅନୁବାଦକର ସାଫଲ୍ୟ ନିହିତ । ଆଚାର୍ଯ୍ୟ ହରିହରଙ୍କ ଅନୂଦିତ 'ଈଶାବାସ୍ୟ ଉପନିଷଦ', 'କେନୋପନିଷଦ', 'କଠୋପନିଷଦ', 'ମୁଣ୍ଡକୋପ-ନିଷଦ', 'ମାଣ୍ଡୁକ୍ୟୋପନିଷଦ' ଓ 'ଭଗବଦ୍ ଗୀତା'କୁ ଅନୁଧ୍ୟାନ କଲେ ଜଣାଯାଏ, ସଂସ୍କୃତ ଭାଷାରେ ରଚିତ ଗୀତା ଓ ଉପନିଷଦ ଗୁଡ଼ିକର ଭାବକୁ ଅକ୍ଷୁଣ୍ଣ ରଖି, ତାହାର ସାହିତ୍ୟିକ ସୌନ୍ଦର୍ଯ୍ୟ ରକ୍ଷା ପୂର୍ବକ ବେଦାନ୍ତ ଦର୍ଶନର ଗୂଢ଼ ତତ୍ତ୍ୱ ସବୁ ସରଳ ପ୍ରାଣସ୍ପର୍ଶୀ ଓଡ଼ିଆ ଭାଷାରେ ଜନସାଧାରଣଙ୍କ ସମ୍ମୁଖରେ ଉପସ୍ଥାପନା କରି ଆଚାର୍ଯ୍ୟ ମହାଶୟ ଜଣେ ସଫଳ ଅନୁବାଦକର ଗୌରବ ରକ୍ଷା କରିପାରିଛନ୍ତି । ଉଭୟ ସଂସ୍କୃତ ଓ ଓଡ଼ିଆ ଭାଷାରେ ତାଙ୍କର ଗଭୀର ଜ୍ଞାନ ହିଁ ଏହି ସଫଳତାର କାରଣ ।

❀

# ତୁମର ସ୍ମୃତିରେ (ଆଚାର୍ଯ୍ୟ ହରିହର ଦାସ)

ଦୀପ୍ତିମୟୀ ପ୍ରଧାନ

ପକ୍ଷୀମାନେ ଯେବେ ଚୁପ୍ ହୋଇଯା'ନ୍ତି
ଆଉ ରଙ୍ଗହୀନ ଅନ୍ଧାର ଭିତରେ
ଏମିତି ଏକ ରାତି ଆସେ...
ଯେଉଁଠି ତୁମର ସ୍ୱପ୍ନ, ଆଶା
ସବୁ ହଜିଯାଏ—ପ୍ରତିଜ୍ଞାବଦ୍ଧ ମଣିଷର
ସୁପ୍ତ ଆଖି ଧାରେ ॥

ଶୁଭେ ଖାଲି ପରାଜୟ
ସ୍ୱାର୍ଥ ପ୍ରବଣତାର ଦୁନ୍ଦୁଭି
ମିଥ୍ୟା, ପାପ, ଭୟରେ ଜଡ଼ସଡ଼
ଅସହାୟ ଜନତା ଆଜି
ତୁମର ପ୍ରତୀକ୍ଷାରତ
ଆସ, ପୁଣି ଥରେ ଫେରି ଆସ
ତ୍ୟାଗ, ଆଦର୍ଶ ଏବଂ ସତ୍ୟର ସଂଗ୍ରାମୀ ତୁମେ
ତୁମର ବା' ମୃତ୍ୟୁ କାହିଁ ?

ଯେମିତିକି ମୃତ୍ୟୁ ନାହିଁ
ଏ ମାଟିର, ଏ ପବନର
ତାରା ଆଉ ନୀଳ ସମୁଦ୍ରର
ହେ ମୋର ଉଜ୍ଜ୍ୱଳ ଭାସ୍କର୍ଯ୍ୟ ।

ଓହ୍ଲାଇ ଆସ, ଧ୍ରୁବ ତାରାର
ଅପହଞ୍ଚ ଦୂରତ୍ୱକୁ ଅତିକ୍ରମ କରି
ଆମରି ଆଖିରେ ରୋଷଣୀ ଟିକେ ଭରିବାକୁ
ଚେତନାର ରକ୍ତାକ୍ତ ବନ୍ୟାରେ
ବୁଡ଼ି ଯାଉଥିବା ମଣିଷର ଦେହେ
ଆଶାର ପ୍ରତ୍ୟୟଟିଏ
ସୃଷ୍ଟି କରିବାକୁ ॥

ପ୍ଲଟ୍ ନଂ-୫୯
ଖାରବେଳ ନଗର

ଆଚାର୍ଯ୍ୟ ହରିହରଙ୍କ ଅନୁବାଦର ଭାଷା ଠାରୁ ପଣ୍ଡିତ ନୀଳକଣ୍ଠଙ୍କ ଅନୁବାଦର ଭାଷା ଅନେକ ସ୍ଥଳରେ ଅଧିକ ଭାବେ ଲୋକ କଥିତ ସତ, କିନ୍ତୁ ଆଚାର୍ଯ୍ୟଙ୍କ ଅର୍ଥ ପ୍ରକାଶ ଭଙ୍ଗୀଟି ନୀଳକଣ୍ଠଙ୍କ ଅପେକ୍ଷା ଅଧିକ ବୋଧଗମ୍ୟ ମନେ ହୁଏ, ଉଦାହରଣ ସ୍ୱରୂପ ଗୀତାର—

"ମନ୍ମନା ଭବ ମଦ୍ ଭକ୍ତୋ ମଦ୍ୟାଜୀ ମାଂ ନମସ୍କୁରୁ
ମାମେବୈଷ୍ୟସି ଯୁକ୍ତ୍ୱୈବମାତ୍ମାନଂ ମତ୍ପରାୟଣ।" (୯।୩୪ ଶ୍ଳୋକ)

ଏହାର ଅର୍ଥକରି ନୀଳକଣ୍ଠ ଲେଖିଛନ୍ତି— "ମୋଠାରେ ମନଦେ, ମତେ ଭଜ୍, ମୋର ପାଇଁ କର୍ମ କର, ମତେ ନମସ୍କାର କର। ଏହିପରି ମତେ ସର୍ବସ୍ୱ କରି ଆତ୍ମାକୁ ମୋଠାରେ ଲଗାଇଲେ ମତେଇ ପାଇବୁ।"

'ମତେ ସର୍ବସ୍ୱ କରି ଆତ୍ମାକୁ ମୋଠାରେ ଲଗାଇଲେ" ଏହାର ଭାଷା ଯେତେ ସରଳ ଭାବ ସେତେ ବୋଧଗମ୍ୟ ନୁହେଁ। ଆଚାର୍ଯ୍ୟ ମହାଶୟ ଏହି କଥାଟିକୁ—"ଏପରି ମନ ଲଗାଇ ମୋ ଆଶ୍ରୟ ଗ୍ରହଣ କଲେ"— ଲେଖି ଭାବଟିକୁ ଅଧିକ ବୋଧଗମ୍ୟ କରିପାରିଛନ୍ତି। ପୂର୍ବୋକ୍ତ ଶ୍ଳୋକର ଅନୁବାଦ କରି ସେ ଲେଖିଛନ୍ତି— "ତୁମେ ମୋ ଠାରେ ଚିତ୍ତ ସମର୍ପଣ କର, ମୋତେ ସେବା କର, ମୋ ପୂଜା ପରାୟଣ ହୁଅ ଏବଂ ମୋତେ ନମସ୍କାର କର। ଏପରି ମନ ଲଗାଇ ମୋ ଆଶ୍ରୟ ଗ୍ରହଣ କଲେ ମତେ ନିଶ୍ଚୟ ପ୍ରାପ୍ତ ହେବ।"

ପାଶ୍ଚାତ୍ୟ ତତ୍ତ୍ୱବିଦ୍‌ମାନେ ଆକ୍ଷରିକ ଅନୁବାଦ ଅପେକ୍ଷା ଭାବାନୁବାଦ ଉପରେ ଅଧିକ ଗୁରୁତ୍ୱ ଆରୋପ କରିଛନ୍ତି। ମୂଳ ଲେଖକଙ୍କ ଭାବକୁ ଅକ୍ଷୁଣ୍ଣ ରଖି ଓ ସାହିତ୍ୟିକ କଳାର ସୌନ୍ଦର୍ଯ୍ୟ ରକ୍ଷା କରି ମୂଳ ରଚନାକୁ ସ୍ୱକୀୟ ପ୍ରତିଭା ବଳରେ ପ୍ରାଣସ୍ପର୍ଶୀ ଭାବେ ରୂପାନ୍ତରିତ କରିବାରେ ହିଁ ଅନୁବାଦକର ସାଫଲ୍ୟ ନିହିତ। ଆଚାର୍ଯ୍ୟ ହରିହରଙ୍କ ଅନୂଦିତ 'ଈଶାବାସ୍ୟ ଉପନିଷଦ', 'କେନୋପନିଷଦ', 'କଠୋପନିଷଦ', 'ମୁଣ୍ଡକୋପ-ନିଷଦ', 'ମାଣ୍ଡୁକ୍ୟୋପନିଷଦ' ଓ 'ଭଗବଦ୍ ଗୀତା'କୁ ଅନୁଧ୍ୟାନ କଲେ ଜଣାଯାଏ, ସଂସ୍କୃତ ଭାଷାରେ ରଚିତ ଗୀତା ଓ ଉପନିଷଦ ଗୁଡ଼ିକର ଭାବକୁ ଅକ୍ଷୁଣ୍ଣ ରଖି, ତାହାର ସାହିତ୍ୟିକ ସୌନ୍ଦର୍ଯ୍ୟ ରକ୍ଷା ପୂର୍ବକ ବେଦାନ୍ତ ଦର୍ଶନର ଗୂଢ଼ ତତ୍ତ୍ୱ ସବୁ ସରଳ ପ୍ରାଣସ୍ପର୍ଶୀ ଓଡ଼ିଆ ଭାଷାରେ ଜନସାଧାରଣଙ୍କ ସମ୍ମୁଖରେ ଉପସ୍ଥାପନା କରି ଆଚାର୍ଯ୍ୟ ମହାଶୟ ଜଣେ ସଫଳ ଅନୁବାଦକର ଗୌରବ ରକ୍ଷା କରିପାରିଛନ୍ତି। ଉଭୟ ସଂସ୍କୃତ ଓ ଓଡ଼ିଆ ଭାଷାରେ ତାଙ୍କର ଗଭୀର ଜ୍ଞାନ ହିଁ ଏହି ସଫଳତାର କାରଣ।

❀

# ତୁମର ସ୍ମୃତିରେ (ଆଚାର୍ଯ୍ୟ ହରିହର ଦାସ)

**ଦୀପ୍ତିମୟୀ ପ୍ରଧାନ**

ପକ୍ଷୀମାନେ ଯେବେ ଚୁପ୍ ହୋଇଯା'ନ୍ତି
ଆଉ ରଙ୍ଗହୀନ ଅନ୍ଧାର ଭିତରେ
ଏମିତି ଏକ ରାତି ଆସେ…
ଯେଉଁଠି ତୁମର ସ୍ୱପ୍ନ, ଆଶା
ସବୁ ହଜିଯାଏ —ପ୍ରତିଜ୍ଞାବଦ୍ଧ ମଣିଷର
ସୁପ୍ତ ଆଖି ଧାରେ ।।

ଶୁଭେ ଖାଲି ପରାଜୟ
ସ୍ୱାର୍ଥ ପ୍ରବଣତାର ଦୁନ୍ଦୁଭି
ମିଥ୍ୟା, ପାପ, ଭୟରେ ଜଡ଼ସଡ଼
ଅସହାୟ ଜନତା ଆଜି
ତୁମର ପ୍ରତୀକ୍ଷାରତ
ଆସ, ପୁଣି ଥରେ ଫେରି ଆସ
ତ୍ୟାଗ, ଆଦର୍ଶ ଏବଂ ସତ୍ୟର ସଂଗ୍ରାମୀ ତୁମେ
ତୁମର ବା' ମୃତ୍ୟୁ କାହିଁ ?

ଯେମିତିକି ମୃତ୍ୟୁ ନାହିଁ
ଏ ମାଟିର, ଏ ପବନର
ତାରା ଆଉ ନୀଳ ସମୁଦ୍ରର
ହେ ମୋର ଉତ୍କଳ ଆଚାର୍ଯ୍ୟ ।

ଓହ୍ଲାଇ ଆସ, ଧ୍ରୁବ ତାରାର
ଅପହଞ୍ଚ ଦୂରତ୍ୱକୁ ଅତିକ୍ରମ କରି
ଆମର ଆଖିରେ ରୋଷଣୀ ଟିକେ ଭରିବାକୁ
ଚେତନାର ରକ୍ତାକ୍ତ ବନ୍ୟାରେ
ବୁଡ଼ି ଯାଉଥିବା ମଣିଷର ଦେହେ
ଆତ୍ମାର ପ୍ରତ୍ୟୟଟିଏ
ସୃଷ୍ଟି କରିବାକୁ ।।

ପ୍ଲଟ୍ ନଂ-୫୯
ଖାରବେଳ ନଗର

# ନିର୍ବାପିତ ଦୀପର ପ୍ରଜ୍ୱଳିତ ଶିଖା

ଭଗୀରଥୀ ମହାପାତ୍ର

ଅପ୍ରାପ୍ୟ ସେ ଦୀପ
ପ୍ରଜ୍ୱଳିତ ଶିଖା ଯା'ର
ନିର୍ବାପନ ପରେ
ଅମର ସେ ଚିରଦୀପ୍ତ ।
ଆଚାର୍ଯ୍ୟ ସେ ବ୍ରହ୍ମା
ହରି ସେ ବିଷ୍ଣୁ
ଆଉ ହର, ମହେଶ୍ୱର ।

ସତ୍ୟବାଦୀ-କଷଟିରେ ଦକ୍ଷ
ଉତ୍କଳର ଭାସ୍ୱର ସନ୍ତାନ
ସ୍ୱର୍ଗଗତ ସେ ଯୁଗପୁରୁଷ ।

ଝକମକ ସ୍ଫୁଲିଙ୍ଗରେ
ବଡ଼ବାନଳର ସତ୍ତା
ସଂକ୍ଷିପ୍ତ ଯେପରି
ଶୀର୍ଣ୍ଣ ଏକ ଅବୟବେ

ପ୍ରକଟିତ ହୋଇଥିଲ
ଏକ ବିସ୍ତୀର୍ଣ୍ଣ ଆତ୍ମା
ସଂସାରରେ ନିଜକୁ ପ୍ରସରି
ସଂସାରକୁ ଆତ୍ମଭୂତ କରି
ବାଣ୍ଟିବାକୁ ସ୍ନେହାଶିଷ ।

ଗୁରୁ ସିଏ ଗୌରବର
ଶିଷ୍ୟର ସେବାରେ ବ୍ରତୀ
ଦ୍ୱାରେ ଦ୍ୱାରେ ପ୍ରଚାରକ

ଶୁଶ୍ରୂଷା ଓ ବିଦ୍ୟାଦାନେ
ସୂତ୍ର ଓ ଭୂଦାନର ଯଜ୍ଞେ
ତିଳେ ତିଳେ ଆହୁତି ଦେଇଣ
ନିଜକୁ, ଜ୍ଞାନକୁ, ସ୍ମୃତିକୁ ।
ଶୁଶ୍ରୂର ପ୍ରତ୍ୟେକ ଲୋମ
ବ୍ୟାକରଣ ସୂତ୍ରର ଛନ୍ଦଣି
ଆଉ ଶୁଶ୍ରୂଳ ମଣିଷଟି
ଇଞ୍ଚୁଡ଼ିର ସେନାପତି
ସ୍ୱାଧୀନତା-ସଂଗ୍ରାମ-ସଇନି ।
'ସମାଜ'ର ସମ୍ପାଦକ
ସମାଜର ସଂସ୍କାରକ
ଗୋପବନ୍ଧୁ-ନିବେଦିତ ଶିଷ୍ୟ
ପ୍ରଜ୍ଞାଦାୟୀ ସେ ସେବକ ।
ସତ୍ୟବାଦୀ-ମାଟିରେ ପ୍ରୋଥିତ
ଉତ୍କଳ-ଧରଣୀସ୍ଥିତ
ପଞ୍ଚପାଣ୍ଡବଙ୍କ ମଧ୍ୟେ
ମଧ୍ୟମର ଖ୍ୟାତି ନେଇ
ଅର୍ଜ୍ଜୁନ ସ୍ୱରୂପ ବୀର
ସେ ଆଚାର୍ଯ୍ୟ ହରିହର ।
ଶିଷ୍ୟଙ୍କର ପଞ୍ଚପ୍ରାଣ
ସ୍ୱ-ମାତାଙ୍କ ଶିକ୍ଷାଗୁରୁ
ସେ ଜାଜ୍ୱଲ୍ୟମୟ
ମାନବ-ନାୟକ ।

ଶିକ୍ଷାର ପରିଚୟ-ପତ୍ର
ଚିହ୍ନିତ ଅଥକଷ୍ଟ-ତନ୍ତ୍ର
ତେଜ ସବ୍, ନବେଦ୍ୱତ
ଶିକ୍ଷକର ଗୁରୁ ଭାରେ
ଅଶିକ୍ଷାର ତମସାରେ
ଶିକ୍ଷାର ଆଲୋକ ଜାଳି
ଶିକ୍ଷାର ସଂସ୍କାରେ ।
ଅଗଣିତ ଶିଷ୍ୟ ଯା'ର
ବିଦ୍ୟାଳୟେ, ଧେଘେ
ଗୃହେ, କାରାଗାରେ
ସେ ମହାନ ଆତ୍ମା
ଉତ୍କଳର ପ୍ରତି ଲୋମକୂପେ
ସ୍ୱେଦ ଝରି ପ୍ରତିଭାତ
ଆଗୃର ଜୀବ ଆଗୃର୍ଯ୍ୟ ।
ଅମଳାନ ହସ ମୁଖେ
ସତ୍ୟର ସଂକଳ୍ପ ସଙ୍ଗେ
ମନଲୋଭା ହାସ୍ୟରସ
ନେଇ ଜନ୍ମ ହୋଇଥିଲେ
ସାଧୁ ହରିହର ଦାସ ।
ସେ ମହାମାନବ
ଏ ଯୁଗର ଦଶାବତାର ।

ଯାହାଠାରେ ଜାଗରୂକ
ସନ୍ନ୍ୟାସୀର ଛଦ୍ମବେଶେ
ଗାନ୍ଧୀ, ଗୋପବନ୍ଧୁ,
ବିନୋବା, ପାଣିମା
ନିର୍ଗୁଣ, ନିର୍ମୂର୍ତ୍ତିଭାବ
ଏକତ୍ର ନିର୍ଯ୍ୟାସ ।
ସେ ମଣି ନଥିଲେ
କାରଣ ସେପରି ମଣି
ସୃଷ୍ଟି ହୋଇନାହିଁ ।
ସେ ଆଲୋକ ନଥିଲେ
କାରଣ ତାଙ୍କ ଜ୍ୟୋତିକୁ
ଧକ୍କା ଦେବା ଭଳି
ଅନ୍ଧକାର ଜନ୍ମି ନାହିଁ ।
ସେ ଧୂପ ନଥିଲେ
କାନ୍ତି ଲଭିଛନ୍ତି ।
ଶିଖା ନଥାଇ ସୁଦ୍ଧା
ଜଳୁଛନ୍ତି ନର ହୃଦୟରେ ।
ସେ ଏକ ବର୍ତ୍ତିକା
ପ୍ରଜ୍ୱଳିତ ନବାପନ ଅନ୍ତେ ।

*

# ଆର୍ଯ୍ୟ ଋଷି ତୋତେ ଶହେ ପ୍ରଣାମ

ନଶାମଣି ସ୍ୱାଇଁ

ଆର୍ଯ୍ୟାବର୍ତ୍ତେ ଜନ୍ମ ନେଇ
ପବିତ୍ର କରିଲ ତୁମେ ଏ ମାଟି ଓ ଆକାଶକୁ
ଉଚ୍ଚାରଣ ବେଦ ମନ୍ତ୍ର ଧ୍ୱନି,
ଆହେ ଆର୍ଯ୍ୟ ଋଷି ।

ଜୀବନର ସେ କେଉଁ ପ୍ରଭାତେ
ସେବା, ଧର୍ମ, ମାନବୀୟ ପ୍ରୀତି
ଝଂଠକଲ୍ ପ୍ରଥମରେ ତବ ହୃଦଗତେ ।

ଆଦର୍ଶରେ ଆକାଶର ବ୍ୟାପ୍ତି
ହୃଦୟରେ ସୀମାହୀନ ପ୍ରୀତି
ଅନନ୍ତରେ ଦୃଷ୍ଟି ଥାପି, ଚାହିଁଥିଲ ଆହେ ମହାମତି ।

ବକୁଳ ଓ ତୁଷ ଅନା କୁଞ୍ଜେ
ସତ୍ୟବାଦୀ ମହୀରୁହ ପୁଞ୍ଜେ
ସମବେତ ସେ ପାଞ୍ଚ ତପସ୍ୱୀ...
ଉଚ୍ଚାରିତ ମହାମନ୍ତ୍ର ଧ୍ୱନି,
ସୃଜିଥିଲ ଅନ୍ୟ ଏକ ଦଣ୍ଡକା ବା ଦୃଶ୍ୟ ପଞ୍ଚବଟୀ ।

ସେ ଭୂମିର ହେ ସାଧକ !
ତପସ୍ୟାର ଅନ୍ତିମ ପର୍ଯ୍ୟାୟେ
ସାଜି ଭଗୀରଥ, ସାଧନାର ଶ୍ରେଷ୍ଠ ସିଦ୍ଧି
ତ୍ୟାଗ ଓ ଆଦର୍ଶର ପୂତନୀର ମନ୍ଦାକିନୀ
ଏ ମାଟିରେ କଲ ପ୍ରବାହିତ ।

ପାଦେ ଭ୍ରମି ବହୁ ଜନପଦେ
ମାନବତା ମହାମନ୍ତ୍ରେ ଅଭିମନ୍ତ୍ରୀ

ଏ ଦେଶର ଜନତା ଓ ଆକାଶ ବତାଶେ
ଯେଉଁ ଦୀକ୍ଷା ଦେଇଥିଲ ତୁମେ,

ଆଜି ବି ତା ଜଳି ଉଠେ,
ପ୍ରତିଟି ଅନ୍ତରେ
ଉତ୍ତୀର୍ଣ୍ଣ ପାହାନ୍ତ ନଭ କାବ୍ୟ ତାରା ସମ ।
ବେଳୁ ବେଳ ଏ ସମାଜ ଓ ସମୟ
ହୁଏ ବିକଳାଙ୍ଗ
ବେଳୁ ବେଳ ଘନୀଭୂତ ହୁଏ ଏଠି
ଭୟ, 'ରୌରବ'ର

କ୍ଷମତା ଓ ଶୋଷଣର ମୋହ ମଦ ଗନ୍ଧେ
ଦିଗାକ୍ରାନ୍ତ ହୋଇ ଉଠେ ପ୍ରତିଟି ମୁହୂର୍ତ୍ତ ।
ଏ ବ୍ୟୂହରୁ ନିସ୍ତାର ବା କାହିଁ ? କାହିଁ ତୁମ ପ୍ରଦର୍ଶିତ ପଥ,
ମୁକ୍ତିର କାକୁତି, ବାଧା ପାଇ ଫେରି ଆସେ
ସମୟ ଓ ସମାଜର ଅବରୁଦ୍ଧ ପାଷାଣ ପ୍ରାଚୀରେ ।
ଏତେବେଳେ, ଆଜି ତେଣୁ, ହେ ଅନିର୍ବାଣ ଦୀପଶିଖା !
ଲୋଡ଼େ ତୁମ ଆଲୋକ ଟିକିକ,
ଅନ୍ତର୍ହିତ ଯିବାକୁ ଏ କଳଙ୍କିତ ଘନ ଅନ୍ଧକାର
ପଛେ ଗୁଡ଼ ଯିବାକୁ ଏ ପକ୍ଷାଘାତ ପାଣ୍ଡୁର ଅଣି ।
ଆଉ କିଛି ନାହିଁ ଲୋଡ଼ା, ମାଗେ ଆଜି ତୁମର ଆଶିଷ
ଆର୍ଯ୍ୟ ଋଷି, ଘେନ ହେ ପ୍ରଣାମ ।

ଅଧ୍ୟାପକ, ଓଡ଼ିଆ ବିଭାଗ
ରାମଚଣ୍ଡୀ ମହାବିଦ୍ୟାଳୟ
ଗଡ଼ମାଣତିର, ପୁରୀ

# ସତ୍ୟବାଦୀର ଆଚାର୍ଯ୍ୟ

**ଶ୍ରୀ ନିରଞ୍ଜନ ରଥ**

ଭାରତୀୟ ସଂସ୍କୃତିରେ ଆଚାର୍ଯ୍ୟ ବା ଗୁରୁଙ୍କର ସ୍ଥାନ ସବୁଠାରୁ ଶ୍ରେଷ୍ଠ ଓ ମହନୀୟ । ସେ ଅଜ୍ଞାନାବଦ୍ଧ ମାନବକୁ ବିଦ୍ୟା ଦାନ ଦେଇ, ଜ୍ଞାନ ଚକ୍ଷୁ ଉନ୍ମୀଳନ କରନ୍ତି । ଆଚାର୍ଯ୍ୟଙ୍କର ଆଶୀର୍ବାଦରୁ, ମାନବ ପଶୁତ୍ୱର ପଞ୍ଜରୁ ମୁକ୍ତ ହୋଇ ମାନବତ୍ୱକୁ ପ୍ରାପ୍ତ ହୁଏ । ଯଥାର୍ଥରେ କୁହାଯାଇଛି "ଆଚାର୍ଯ୍ୟଃ ଶ୍ରେଷ୍ଠୋ ଗୁରୁଣାମ୍", "ଆଚାର୍ଯ୍ୟୋ ଦେବ ଭବ" । ଏହି ମହାନ୍ ଆଚାର୍ଯ୍ୟ ପରମ୍ପରାର ପ୍ରତୀକ ଥିଲେ ଆଚାର୍ଯ୍ୟ ହରିହର । ଶ୍ମଶ୍ରୁଯୁକ୍ତ ମୁଖମଣ୍ଡଳକୁ ଦେଖିଲେ ସ୍ୱତଃ ବେଦ ଓ ଉପନିଷଦ ଯୁଗର ଋଷିମାନଙ୍କ ଚରିତ୍ର ମନେ ପଡେ ।

"ସରକାରୀ ଚାକିରୀ କରିବା ନାହିଁ, ନିଜର ଭରଣ ପୋଷଣ ବିଳାସରେ ମନ ଦେବା ନାହିଁ" ଏହା ଥିଲା ତାଙ୍କର, ଗୋପବନ୍ଧୁ, ନୀଳକଣ୍ଠ, କୃପାସିନ୍ଧୁ ଓ ଗୋଦାବରୀଶଙ୍କ ସହ ପ୍ରତିଜ୍ଞା । ଲୋକୈଷଣା, ବିତ୍ତୈଷଣା ତାଙ୍କର ମନକୁ ସ୍ପର୍ଶ କରି-ନଥିଲା । ୧୯୦୪ରେ ଏଫ୍. ଏ. ପାଶ କରି ଶିକ୍ଷକ ଜୀବନକୁ ସେ ବରଣ କଲେ । ମଣିଷ ଗଢ଼ିବା ଜୀବନର ଲକ୍ଷ୍ୟ । ୧୯୧୨ରେ ସତ୍ୟବାଦୀର ଜାତୀୟ ବିଦ୍ୟାଳୟ ଗୋପବନ୍ଧୁଙ୍କ ଚେଷ୍ଟାରେ ହାଇସ୍କୁଲରେ ପରିଣତ ହେଲା । ହରିହର ଗୋପବନ୍ଧୁଙ୍କ ଆହ୍ୱାନରେ ଉଦ୍‌ବୁଦ୍ଧ ହୋଇ ପ୍ୟାରୀମୋହନ ଏକାଡେମୀ ଛାଡ଼ି ସତ୍ୟବାଦୀ ବନ ବିଦ୍ୟାଳୟରେ ଯୋଗ ଦେଲେ ।

ବନ ବିଦ୍ୟାଳୟରେ ଛାତ୍ରାବାସର ତତ୍ତ୍ୱାବଧାରକ ଥାଇ, ଆଚାର୍ଯ୍ୟ ଅଧ୍ୟୟନ ଓ ଅଧ୍ୟାପନା କାର୍ଯ୍ୟରେ ମଗ୍ନ ରହୁଥିଲେ । ପିଲାମାନେ ଥିଲେ ତାଙ୍କର ଜୀବନ, ପିଲାମାନଙ୍କର ପଢ଼ାପଢି ତଦାରଖ କରିବା ସଙ୍ଗେ ସଙ୍ଗେ, ସେମାନଙ୍କର ସୁବିଧା ଅସୁବିଧା ଏପରିକି ଶାରୀରିକ ସୁସ୍ଥତା ପ୍ରତି ମଧ୍ୟ ସେ ଦୃଷ୍ଟି ଦେଉଥିଲେ । ଆଚାର୍ଯ୍ୟଙ୍କ ପାଇଁ "ମଣିଷ" ଥିଲା ସବୁଠାରୁ ମୂଲ୍ୟବାନ । ମନୁଷ୍ୟ ଠାରୁ ଏ ଜଗତରେ ଆଉ କିଛି ଶ୍ରେଷ୍ଠ ନାହିଁ ।

"ଗୁହ୍ୟମ ବ୍ରହ୍ମ ତଦ୍ ଇଦମ୍ ବୋ ବ୍ରବୀମି
ନ ମାନୁଷାତ୍ ଶ୍ରେଷ୍ଠତରମ୍ ହି କିଞ୍ଚିତ୍"--- (ମହାଭାରତ)

ନିଜକୁ ଆଦର୍ଶ କରି ପିଲାମାନଙ୍କୁ ସବୁବେଳେ ମଣିଷ ହେବା ପାଇଁ ଉପଦେଶ ଦେଉଥିଲେ । "ତୁମେ ସବୁ ଭଲ ମଣିଷ ହୁଅ । ଭଲ ମଣିଷ ହେବାପାଇଁ ଭଲ ଘର, ଭଲ ଗାଡ଼ି, ଭଲ ପୋଷାକ ଦରକାର ହୁଏ ନାହିଁ । ବିଳାସ ବୈଭବ ମନୁଷ୍ୟକୁ ଅମଣିଷ କରେ । ତୁମେ ଇଞ୍ଜିନିୟର ହୁଅ, ଡାକ୍ତର ହୁଅ, ଓକିଲ ହୁଅ, ବ୍ୟବସାୟୀ ବା ଶିକ୍ଷକ ହୁଅ—ସବୁ କ୍ଷେତ୍ରରେ ଭଲ ମଣିଷ ଆବଶ୍ୟକ ।"

ଯେଉଁ ଶିକ୍ଷା ପଦ୍ଧତିରେ ଚରିତ୍ର ନିର୍ମାଣର ସ୍ଥାନ ନଥାଏ, ତାହା ନିରର୍ଥକ । ଶିକ୍ଷା ଦେବା ବାହାନାରେ କିଭଳି କୋମଳମତି ପିଲାମାନଙ୍କର ନୈତିକ ମାନଦଣ୍ଡକୁ ଦୁର୍ବଳ କରାଯାଉଛି, ତାହାର ସମାଲୋଚନା କରି ସେ କହିଥିଲେ "ଲାଭ କ୍ଷତି ଅଙ୍କରେ ବେପାରୀ କ୍ଷୀର ସହିତ ପାଣି ମିଶାଇବା କଥା ପଢ଼ା ହୋଇଛି । ଏଥିରୁ ଆମ ପିଲାମାନେ ସାଧୁତା ସମ୍ପର୍କରେ କି ଧାରଣା ଅର୍ଜନ କରିବେ ? ସାହିତ୍ୟ କିମ୍ବା ଇତିହାସ କହିଲେ ପୂର୍ବେ ଉତ୍କଳର ଗୌରବମୟ କାହାଣୀ ରୂପେ କାଞ୍ଚୀ ବିଜୟ ଓ ପଦ୍ମାବତୀ ହରଣ ପଢା ଯାଉଛି । ଏଥିରୁ ଛାତ୍ରମାନେ କି ନୈତିକ ଜ୍ଞାନ ଲାଭ କରିବେ ।" ୧୯୧୨ ରୁ ୧୯୨୧ ପର୍ଯ୍ୟନ୍ତ ବକୁଳ ବନର ଛୁରିଅନା କୁଞ୍ଜ ଥିଲା ତାଙ୍କର ସାଧନ କ୍ଷେତ୍ର । ପିଲାମାନଙ୍କୁ ଉପଯୁକ୍ତ ଶିକ୍ଷା ଦେଇ ଆଧ୍ୟାତ୍ମିକ ତଥା ଆତ୍ମୀୟତାର ବାତାବରଣ ସୃଷ୍ଟି କରିବା ପାଇଁ ସେ ନିରବଚ୍ଛିନ୍ନ ସାଧନା ଚଳାଇ ଥିଲେ । ସତ୍ୟ, ଧୃତି, ଦୟା, କ୍ଷମା, ତିତିକ୍ଷା, ଅସ୍ତେୟ ଓ ସଂଯମତା ଆଦି ଦୈବୀ ସମ୍ପଦର ଅଧିକାରୀ ହୋଇ ସେ ଆଚାର୍ଯ୍ୟ ପଦକୁ ସାର୍ଥକ କରିଥିଲେ ।

ଆଦର୍ଶ ଜାତୀୟ ବିଦ୍ୟାଳୟର ସ୍ୱପ୍ନ, ସ୍ୱପ୍ନରେ ହିଁ ରହିଗଲା । ଆଚାର୍ଯ୍ୟ ହରିହର ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଲେ । ୧୯୩୦ ମସିହାରେ ଆଇନ୍ ଅମାନ୍ୟ କରି, ହଜାରିବାଗ୍ ଜେଲରେ ଥିଲାବେଳେ ପିଲାମାନଙ୍କୁ ପଢ଼ାଉଥିଲେ । ସହବନ୍ଦୀ ମାନଙ୍କୁ ମଧ୍ୟ ଭଗବଦ୍ ଗୀତା ଓ ଉପନିଷଦ ପଢ଼ାଉ ଥିଲେ । ଭଗବଦ୍ ଗୀତା ଓ କେତୋଟି ଉପନିଷଦର ସରଳ ଉତ୍କଳାନୁବାଦ ମଧ୍ୟ କରିଛନ୍ତି । ଜୀବନର ଶେଷ ପର୍ଯ୍ୟାୟରେ ମଧ୍ୟ ଭୂଦାନ ଆନ୍ଦୋଳନରେ ଯୋଗଦେଇ ପଦଯାତ୍ରା ଆରମ୍ଭ କରିଥିଲେ । କୃଶକାୟ, କ୍ଷୀଣ ଦୁର୍ବଳ ଶରୀରରେ ମଧ୍ୟ ଦୃଢ଼ ସଂକଳ୍ପବଦ୍ଧ ହୋଇ ସେ ଏକ ହଜାର ମାଇଲ୍ ଅତିକ୍ରମ କରିଥିଲେ । ତାଙ୍କର ଜୀବନ ସତ୍ୟ ପାଇଁ ଉତ୍ସର୍ଗୀକୃତ ଥିଲା । ପଣ୍ଡିତ ଗୋପବନ୍ଧୁଙ୍କ ଭାଷାରେ—

"ସତ୍ୟାନୁସନ୍ଧାନେ ଆମର ସଂଗ୍ରାମ
ବଳିଦାନେ ପରା ଆମର ବିଶ୍ରାମ"

ସାଧାରଣ ମାନବ ଦିଗ୍‌ଦର୍ଶନ ପାଇଁ ମହାପୁରୁଷମାନଙ୍କୁ ଅପେକ୍ଷା କରେ, କିନ୍ତୁ ମହାପୁରୁଷମାନଙ୍କ ବାଣୀ ସେ ଶୁଣେ ନାହିଁ । ସ୍ୱାର୍ଥଜଡ଼ିତ ପଙ୍କିଳ ଜୀବନକୁ ଛାଡ଼ିବା ପାଇଁ ଚେଷ୍ଟା ମଧ୍ୟ କରେ ନାହିଁ । ଏ ମହାନ୍ ଋଷି ପ୍ରତିମ ଆଚାର୍ଯ୍ୟଙ୍କ ପାଇଁ ଏ ଦେଶ ପକ୍ଷୀର ଆହାର ମଧ୍ୟ ଯୋଗାଇ ପାରିଲା ନାହିଁ । ୨୧.୨.୭୧ ତାରିଖ ଏକାଦଶୀ ତିଥିରେ ଆଚାର୍ଯ୍ୟ ଇହଲୀଳା ସମ୍ବରଣ କଲେ । କାଳର ବିସ୍ମୃତ ଗର୍ଭରେ ସେ ବିସ୍ମୃତ ହୋଇ ଗଲେଣି । ତାଙ୍କର ଆଦର୍ଶ, ପୁରାଣ ଯୁଗର ଆଦର୍ଶ ଭଳି କେବଳ ଆଦର୍ଶ ମାତ୍ର ହୋଇ ରହିଛି । ଏବେ ତାଙ୍କ ପରି ଆଚାର୍ଯ୍ୟ ବିରଳ । ତାଙ୍କର ଉପଦେଶ "ତୁମେ ସବୁ ଭଲ ମଣିଷ ହୁଅ" ଏବେ ଏକ ଅମୀମାଂସିତ ପ୍ରଶ୍ନ ରୂପେ ସମସ୍ତଙ୍କ ମନକୁ ସନ୍ଦୁଳିତ କରୁଛି— "ଭଲ ମଣିଷ କିପରି ହେବା ?"

*

With best compliments from :

| | |
|---|---|
| Dr ANJALI PADHI<br>Nandighosh<br>Khariar<br>Kalahandi-766107 | Smt. SHANTILATA MISRA<br>C/5, Unit-3,<br>Bhubaneswar |
| DAGARA PRESS<br>D/4, Unit-3<br>Bhubaneswar-1 | SNEHA PRESS<br>Unit-IV-Market<br>Bhubaneswar-1 |
| Dr. (Mrs) HARIPRIYA MAHAPATRA<br>D/4, Unit-3<br>BBSR | Sri Santanu K. Acharya<br>& Smt Nirupama Acharya<br>on behalf of<br>Nanda kishore Rath<br>Smuti Sansad<br>Bhubaneswar |
| Sri Ramesh Ch Dhall Advocate<br>& Mrs. Shanti Dhall<br>Unit-3, Bhubaneswar | M/s UDYOG PRINTERS<br>Unit-3<br>Bhubaneswar-1 |
| Mr. SANTOSH K. RATH<br>& Ms. BIJAYA MISRA<br>Rourkela-2 | Dr. BARADAKANTA MISRA<br>& Mrs. BICHIMALA<br>Bhubaneswar |
| SUCHARITA<br>Only women's Oriya Monthly of Repute<br>Saheed Nagar<br>Bhubaneswar-7 | Dr. Mahendra Misra<br>SINAPALI<br>Kalahandi |
| Er. Benudhar Mahapatra<br>Saheed Nagar<br>Bhubaneswar | Smt. Kuntala k. Acharya<br>Habeligali<br>PURI |

# Bairagi Misra Institute of Technical Education (BMITE)

(20.5.89)

BIMTE takes up short term courses on allied technical subjects and functions as a need based institution.

Banker : M/s Indian Bank
OK & V.B. Extn. Counter
Janapath, Bhubaneswar

# Pandit Nilakantha Research Institute (PNR)

This institute was formed as a Deptt. of AHEDS to take up research, work in Orissa.

Advisor : Er. Madhusudan Das

Dr. Bijaya Prasad Mahapatra—Chairman
Dr. Gaganendranath Das—Director
Dr. Bhabagrahi Misra—Member
Dr. Panchanan Mohanty—"
Dr. Banamali Barik—
Dr. Mahendra K. Misra—
Dr. Anjali Padhi—
Dr. Smita Mahanty— Secy.

PNRI has taken up two research monographs for completion.

1. Essays on Linguistics & Folkloristics (Contribution of Pandit Nilakantha Das)
2. Authorised Version of Pandit Nilakantha's Oriya Vyakarana

## PUBLICATION DEPTT.

AHEDS

1. Acharya Harihar Smaraki (1988)
2. Acharya Harihar Smarane (Poetry-In Press)
3. Acharya Harihar : An Illustrious son of Orissa (In Press)
4. Bairagi Misra : A Biography (In Press)

# ଆଚାର୍ଯ୍ୟ ସ୍ମରଣେ

ଡାକ୍ତର ହରିକିଶୋର ଭୂୟାଁ

ବକୁଳ ବନର ଅନ୍ତିମ ପାଣ୍ଡବ
    ଚାଲିଗଲ ତୁମେ ଚାଲିଗଲ
ବହୁତ ଦିନର ବିଚ୍ଛେଦ ଯନ୍ତ୍ରଣା
    ମିଳି ସଖାଗଣେ ଭୁଲିଗଲ !
ତୁମେ ସିନା ସେଠି ହେଲ ଏକତ୍ରିତ
ଆମେ କିନ୍ତୁ ହେଲୁ ସ୍ନେହରୁ ବଞ୍ଚିତ
ହୃଦୟ ଅନ୍ତରେ ଦାରୁଣ ଆଘାତ
    ଆଚାର୍ଯ୍ୟେ ଆମକୁ ଦେଇଗଲ
    ବଞ୍ଚି ରହିଲନି କିଛି କାଳ ।।୧।

ବାଗ୍ମୀ ନୀଳକଣ୍ଠ ତ୍ୟାଗୀ ଗୋପବନ୍ଧୁ
ଐତିହାସିକ ମିଶ୍ର କୃପାସିନ୍ଧୁ
ତୁମେ ହରିହର ପଞ୍ଚଜନ ବନ୍ଧୁ
    ବକୁଳ ବନରେ ସଖା ଥିଲ
(ଏବେ) ଗୋଦାବରୀଶଙ୍କୁ ପାଖରେ ବସାଇ
    ସ୍ୱରଗ ଧାମରେ ହେଲ ମେଳ ।୨।

କରି ଆଲୋଚନା ପଠାଅ ନିର୍ଦ୍ଦେଶ
    କିପରି ଉତ୍କଳ ଲଭିବ ସୁଯଶ
କିଏ ଯେ ଢାଳିବ ଆମଙ୍କୁ ଆଶିଷ
    "ସକଳ ମଣିଷ ହୁଅ ଭଲ"
    ଆମେ ହେଲୁଣି ବହୁତ କଳବଳ ।୩।

ଭୂଦାନ ଯଜ୍ଞର ପୂର୍ଣ୍ଣାହୁତି ପାଇଁ
ତୁମେ ଯିବାଥିଲ ମୁଖ୍ୟ ହୋତା ହୋଇ
    କାହାକୁ ସ୍ଥାପିବା ତୁମ ସ୍ଥାନେ ନେଇ
    କାହିଁ ପାଇଁ ଥରେ ନ କହିଲ ?
    ହରିହର ତୁମେ ଚାଲିଗଲ ।୪।

# Acharya Harihar Mahabidyalaya (AHM)

**A Constituent Unit of AHEDS**

('5-9-81 )

**Sri Gangadhar Mahapatra**
Hon. Patron

**Sri Nityananda Mahapatra**
Hon. Patron

**Sri Satrughna Nath**
Hon. Patron

The College was established on 5-9-81 to provide College Education in Arts & Commerce. We are now in a position to begin Degree Classes (+3) in Arts & Commerce from the session 1990-91.

The College is managed by a Management Committee nominated by AHEDS.

Er. Madhusudan Das-*Chairman*

Smt Kuntala Ku. Acharya-*Vice-Chairperson*

Sri Mahabhava Prakash Mahapatra-*Secretary*

*Members:—*

Dr. Bhabagrahi Misra.
Sri Biraja S. Acharya.
Sri Sitaballav Mahapatra.
Sri Ramesh ch. Dhall
Smt Sakuntala Panda.
Er. Benudhar Mahapatra.

*Principal:—*

Sri Druga Charan Parida

*Bankers :*

**M/s. Punjab National Bank**
Station Road, Bhubaneswar

**M/s. Andhra Bank**
Madhusudan Nagar
Bhubaneswar

**M/s. A.K. Kar & Co.**
Sahid Nagar
Bhubaneswar

With best compliments from :

Sri Hrudananda Panigrahi

Keonjhar

---

Sri Kamalesh Rath

Blomington, Indiana
USA

---

Mrs. Kalyani Pattnnik

Unit-3, Kharavela Nagar
Bhubaneswar

---

Dr. B. B. Rath

Unit-3
Bhubaneswar

---

SRI TAPAN K. PATTANAIK

& Smt. MANOLINA DAS

# ଆଚାର୍ଯ୍ୟ ହରିହରଙ୍କ ଆହ୍ୱାନ

ଡକ୍ଟର ସୂର୍ଯ୍ୟକାନ୍ତ ଦାସ

(ପୂର୍ବତନ ପ୍ରୋ-ଭାଇସ୍ ଚାନ୍ସେଲର୍-ନର୍ଥ
ଇଷ୍ଟର୍ଣ୍ଣ ହିଲ୍ ୟୁନିଭରସିଟି, ନାଗାଲଣ୍ଡ, କୋହିମା)

ଓଡ଼ିଆ ଜାତିକୁ ଆଚାର୍ଯ୍ୟ ହରିହର ଯେଉଁ ମହାନ୍ ସନ୍ଦେଶ ଦେଇ ଯାଇଛନ୍ତି, ତାହାକୁ ଆମ ଦୈନନ୍ଦିନ ଜୀବନରେ ଉପଲବ୍ଧି କରିବାକୁ ଆମେ ଯେଉଁଦିନ ସମର୍ଥ ହେବୁ, ସେଇଦିନ ଏ ଜାତିର ଦୁର୍ଦ୍ଦଶା ଘୁଞ୍ଚିବ । 'ଭଲ ମଣିଷ ହୁଅ' ଏହି ଥିଲା ତାଙ୍କର ସନ୍ଦେଶ । ସଂକ୍ଷିପ୍ତ ଅଥଚ ସାରର୍ଭୌକ ସନ୍ଦେଶ । ମାତ୍ର ତିନିଗୋଟି ଶ୍ରେଷ୍ଠ ଓଡ଼ିଆ ଶବ୍ଦ । ଗୋଟିଏ ଅତି ସରଳ ବାକ୍ୟ—ଭଲ ମଣିଷ ହୁଅ । କିନ୍ତୁ ପ୍ରକୃତରେ କହିବାକୁ ଯେତେ ସହଜ, କରିବାକୁ ବା ହୋଇପାରିବାକୁ ସେତେ ସହଜ ନୁହେଁ । ପ୍ରଥମେ, ମଣିଷ ପରି ମଣିଷ ହେବ । ତା'ପରେ ଭଲ ମଣିଷ ହେବ । ଆଚାର୍ଯ୍ୟ ମହାଶୟ ଏହି ଆହ୍ୱାନ ଦେଇଯାଇଛନ୍ତି ।

ଦେଖିବାକୁ ଗଲେ ଆଚାର୍ଯ୍ୟ ଚାହୁଁଥିଲେ, ନୂଆ ମଣିଷ ଗଢ଼ିବେ । ନୂଆ ଜାତି ଗଢ଼ିବେ । ମହାତ୍ମା ଗାନ୍ଧୀ ବି ଏଇଆ ଆଶା ରଖିଥିଲେ । ନୂଆ ମଣିଷ ଗଢ଼ିବେ । ଉତ୍ତମ ଭାରତୀୟ ନାଗରିକ ସୃଷ୍ଟି କରିବେ । ଲେନିନ୍ ବି ସେଇ ଲକ୍ଷ୍ୟରେ ସଂଗ୍ରାମ ଚଳାଇଥିଲେ । ନୂଆ ମାନବ ସମାଜ ଗଠିତ ହେବ, ନୂଆ ଦୁନିଆ ଗଢ଼ାଯିବ । ମନୁଷ୍ୟର ପ୍ରକୃତି ଉଦାର ଓ ମଧୁର ହେବ । ମାନବିକତାର ବିକାଶ ହେବ । ମହାପୁରୁଷମାନେ ଯାହା ଚାହିଁ ଆସିଛନ୍ତି ତା' ହେଲା ନୂଆ ମଣିଷ ସୃଷ୍ଟି ହୁଅନ୍ତୁ । ଭଲ ମଣିଷ ଗଢ଼ି ଉଠନ୍ତୁ । ଭଲ ମଣିଷ ହେବାକୁ ଆଚାର୍ଯ୍ୟ ହରିହର ନିଜର ଜୀବନ ଉତ୍ସର୍ଗ କରିଥିଲେ । ସେ ନିଜେ ଥିଲେ ଜଣେ ଖୁବ ଭଲ ମଣିଷ । ଉନ୍ନତ ଓ ଉଚ୍ଚ ବ୍ୟକ୍ତିତ୍ୱ ସମ୍ପନ୍ନ ମଣିଷ । ନିଜେ ମାନବିକତାର ଯେଉଁ ଶୀର୍ଷ ସୋପାନରେ ଉପନୀତ ହୋଇଥିଲେ, ସେଇ ଶୀର୍ଷ ଦେଶରୁ ସେ ଆହ୍ୱାନ ଦେଉଥିଲେ—ଆସ, ଆମେ ସମସ୍ତେ ଭଲ ମଣିଷ ହେବା । ଭଲ ମଣିଷ ହେବା ସମ୍ଭବ, ଅସମ୍ଭବ ନୁହେଁ । ଅସାଧ୍ୟ ନୁହେଁ । ତେଣୁ ନିଜର ଆଦର୍ଶ ଜୀବନ ଯାପନ ପ୍ରଣାଳୀ ଓ ଚରିତ୍ରବଳକୁ ପ୍ରକଟିତ କରି ଆଚାର୍ଯ୍ୟ ମହାଶୟ ଆମ ସମସ୍ତଙ୍କୁ, ଓଡ଼ିଆ ଜାତିକୁ ପରାମର୍ଶ ଦେଇଛନ୍ତି—ଉଦ୍‌ବୋଧନ ଦେଇଛନ୍ତି ଭଲ ମଣିଷଟିଏ ହୁଅ ।

ଭଲ ମଣିଷର ସଂଜ୍ଞା କଅଣ ? ଭଲ ମଣିଷରେ ଗୁଣାଗୁଣ କ'ଣ ? ତାହା ଆଚାର୍ଯ୍ୟ ମହାଶୟଙ୍କ ନିଜ ଜୀବନରେ ପ୍ରତିଫଳିତ ହୋଇଥିଲା । ଦେଶ ସେବାରେ ସେ ଆତ୍ମୋତ୍ସର୍ଗ କରିଥିଲେ । ପରୋପକାରକୁ ଜୀବନର ବ୍ରତ ରୂପେ ଗ୍ରହଣ କରିଥିଲେ । ସ୍ନେହ, ସୌହାର୍ଦ୍ଦ୍ୟ ଓ ସଦ୍‌ଭାବର ସ୍ରୋତ ଛୁଟାଇଥିଲେ । ଜୀବନକୁ ଶୃଙ୍ଖଳାବଦ୍ଧ

କରିଥିଲେ । ସମୟାନୁବର୍ତ୍ତୀ ହୋଇଥିଲେ । ଭୋଗ ବିଳାସ ପରିତ୍ୟାଗ କରିଥିଲେ । ଗର୍ବ-ଅହଂକାର ବଡ଼ିମାକୁ ବିସର୍ଜନ ଦେଇଥିଲେ । ଆଚାର୍ଯ୍ୟ ଥିଲେ ପରୋପକାରୀ, ନିରହଙ୍କାରୀ, ବିନମ୍ର ତ୍ୟାଗୀ ପୁରୁଷ । ସେ ଥିଲେ ବିନୟ ଓ ନମ୍ରତାର ପ୍ରତୀକ । ସେ ଥିଲେ ମହାନ୍ ଯୋଗୀ, ମହାପୁରୁଷ । ସମସ୍ତଙ୍କ ପ୍ରତି ତାଙ୍କର ଥିଲା ଆତ୍ମୀୟତା, ସ୍ନେହଶ୍ରଦ୍ଧା, ଆଶୀର୍ବାଦ—ଅକୁଣ୍ଠ ଆଶୀର୍ବାଦ । ତାଙ୍କର ଏକାଗ୍ରତା, କର୍ମତତ୍ପରତା, ଛାତ୍ରବତ୍ସଳତା, ସରଳତା ଥିଲା ଅନନ୍ୟ ସାଧାରଣ । ଆଚାର୍ଯ୍ୟ ମହୋଦୟ ଆମକୁ ଯେଉଁ ଆହ୍ୱାନ ଦେଇଛନ୍ତି—ଭଲ ମଣିଷ ହୁଅ—ତାହା କେବଳ ତାଙ୍କର ତୁଣ୍ଡରୁ ହିଁ ବାହାରି ପାରେ । ଅନ୍ୟ କାହା ତୁଣ୍ଡରେ ନୁହେଁ, କେବଳ ତାଙ୍କର ମୁହଁରୁ । କାରଣ, ସେ ନିଜେ ଥିଲେ ଆଦର୍ଶ ପୁରୁଷ । ଶ୍ରୀମଦ୍ ଭଗବତ୍ ଗୀତା ଭାଷାରେ ସେ ଥିଲେ "ସ୍ଥିତପ୍ରଜ୍ଞ" "ଦୁଃଖେଷୁ ନିରୁଦ୍‌ବିଗ୍ନ ମନା, ସୁଖେଷୁ ବିଗତସ୍ପୃହ ।" ଆଚାର୍ଯ୍ୟ ମହାଶୟ ପୂଜା ଆରାଧନା ଗୀତା ପାଠରେ ସମୟର ସଦୁପଯୋଗ କରୁଥିଲେ । ତାଙ୍କ ଟୀକାଟିପ୍ପଣୀ ସମ୍ବଳିତ ଭଗବତ୍ ଗୀତା ଆମ ଓଡ଼ିଆ ସାହିତ୍ୟରେ ଗୋଟିଏ ଅମୂଲ୍ୟ ସମ୍ପଦ । ଆଚାର୍ଯ୍ୟଙ୍କ ପାଣ୍ଡିତ୍ୟ ଓ ପ୍ରଜ୍ଞା ଦ୍ୱାରା କେତେ କେତେ ବ୍ୟକ୍ତି ଅନୁପ୍ରାଣିତ ହୋଇଛନ୍ତି, ତାହାର କଳନା ନାହିଁ । ତାଙ୍କ ଦ୍ୱାରା ଅନୁପ୍ରାଣିତ ହୋଇଛନ୍ତି ସତ୍ୟବାଦୀ ବନବିଦ୍ୟାଳୟର ଛାତ୍ରମାନେ, କଂଗ୍ରେସର ସ୍ୱେଚ୍ଛାସେବକ ମାନେ, ସର୍ବୋଦୟର କର୍ମୀମାନେ, ଆଶ୍ରମର ଅନ୍ତେଃବାସୀ ମାନେ, ଗ୍ରାମାଞ୍ଚଳର ଆବାଳ ବୃଦ୍ଧ ବନିତା ନରନାରୀ । ଜଷ୍ଟିସ୍ ହରିହର ମହାପାତ୍ର ଲେଖିଛନ୍ତି—"ଆଚାର୍ଯ୍ୟ କହିଲେ କେବଳ ହରିବାବୁଙ୍କ ସେହି ସ୍ଥିତପ୍ରଜ୍ଞ, ସାହାସୀ, ଅଭୟ ମୂର୍ତ୍ତି ଆଖିରେ ଦିଶେ ଓ ମନରେ ଭାସେ ।

କାହାପ୍ରତି ରାଗ ଦ୍ୱେଷ ରଖିବା ବା କଠୋର ବାକ୍ୟରେ ସମାଲୋଚନା କରିବା ତାଙ୍କ ଜାତକରେ ନଥିଲା । ହରିଜନ ଆନ୍ଦୋଳନରେ ଲିପ୍ତ ଥିବା ବେଳେ ତାଙ୍କର ମହାନୁଭବ ଓ ବିଶ୍ୱମାନବ ପ୍ରୀତି ସମସ୍ତଙ୍କ ଆଖି ଝଲସାଇ ଦେଉଥିଲା । ତାଙ୍କ ଜୀବନ କାଳର ଘଟଣାବଳୀ ମଧ୍ୟରୁ ରୋଗୀ ସେବା, ପରିତ୍ୟକ୍ତ ଅସହାୟ ବ୍ୟକ୍ତିର ଶବ ସତ୍କାର କରିବା, ଦରିଦ୍ର ଓ ଭୂମିହୀନଙ୍କ ପାଇଁ ଭୂଦାନ ପଦଯାତ୍ରା କରିବା, ସମସ୍ତ ଭଲ କାମରେ ପ୍ରବୃତ୍ତ ହେବା ପାଇଁ ସବାଗ୍ରେ ଅଣ୍ଟାଭିଡ଼ି ଆଗେଇ ପଡିବାକୁ କିଏ ଭୁଲି ପାରିବେ ? ତାଙ୍କର ଜୀବନର କାର୍ଯ୍ୟଧାରା ଓ ଜୀବନ ଯାତ୍ରା ନିଜ ପାଇଁ ନଥିଲା । ଦୈହିକ ଉପଭୋଗ ପାଇଁ ଉଦ୍ଦିଷ୍ଟ ନଥିଲା । ଶେଷ ନିଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ସେ ଜନସେବା, ସମାଜସେବା, ଦେଶ ସେବା ଏବଂ ଈଶ୍ୱର ଭକ୍ତିରେ ସମୟ କଟାଇ ଦେଇଛନ୍ତି ।

ସଂସାରର ମାୟା ଜାଲରେ ସେ ବନ୍ଧା ହୋଇ ପଡ଼ିନଥିଲେ । ସେଥିପାଇଁ ସେ ଥିଲେ ଅତ୍ୟନ୍ତ ସ୍ନେହୀ ଏବଂ ଉଦାର ହୃଦୟ ବ୍ୟକ୍ତି । ତାଙ୍କ ଦୃଷ୍ଟିରେ ନିଜ ବା ପର ହୋଇ କେହି ରହୁନଥିଲେ । ସମସ୍ତଙ୍କୁ ସେ ଆଦର ଅଭ୍ୟର୍ଥନା କରି ସ୍ନେହ-ସୋହାଗରେ ବିହ୍ୱଳିତ କରି ପକାଉଥିଲେ । ତାଙ୍କର ଜ୍ଞାତି ଭାଇ ଓ ପିଲାଦିନର ସହଚର ବାଗ୍ମୀ, ସାହିତ୍ୟିକ, ପଣ୍ଡିତ ନୀଳକଣ୍ଠ ଦାସଙ୍କ ସହିତ ତାଙ୍କର ମନର ମିଳନ ଥିଲା । ହୃଦୟର ବି ମିଳନ ଥିଲା । ପଣ୍ଡିତ ନୀଳକଣ୍ଠଙ୍କୁ ଆଚାର୍ଯ୍ୟ ହରିହର ସାନ ଭାଇ ତୁଲ୍ୟ ସ୍ନେହ ସୋହାଗ ଦେଖାଉଥିଲେ । ନୀଳକଣ୍ଠଙ୍କ ସ୍ୱର୍ଗାରୋହଣ ପରେ ଆଚାର୍ଯ୍ୟ ମହାଶୟଙ୍କ ତୁଣ୍ଡରୁ ବିକଳରେ ସ୍ୱତଃ ବାହାରି ପଡ଼ିଲା— "ହଇରେ ତୁ ସାନ ହୋଇ ଆଗ ଚାଲିଗଲୁ ? ହଉ କିଣ୍ଟୁ, ମୋ ପାଇଁ ଟିକିଏ ଜାଗା ରଖିଥିବୁ ।"

ଦେଶ ସେବାରେ ଯେପରି ଅଗ୍ରଣୀ, ଶିକ୍ଷା କ୍ଷେତ୍ରରେ ବି ଆଚାର୍ଯ୍ୟ ହରିହର ସେହିପରି ଖ୍ୟାତି ଅର୍ଜନ କରିଥିଲେ । ପ୍ରଫେସର ଗଣେଶ୍ୱର ମିଶ୍ର ଲେଖିଛନ୍ତି— "ଆଚାର୍ଯ୍ୟ ମହାଶୟ ଯେ ଏ ଦେଶର ଜଣେ ଶ୍ରେଷ୍ଠ

ଶିକ୍ଷକ ଥିଲେ, ହୁଏତ ତାହାର ସ୍ମାରକୀ ସ୍ୱରୂପ ଦେଶବାସୀ ତାଙ୍କ ନାମ ସହ 'ଆଚାର୍ଯ୍ୟ' ଉପାଧିଟା ଯୋଡ଼ି ଦେଇଛନ୍ତି । ସେ କିନ୍ତୁ କୌଣସି ଉପାଧି ପସନ୍ଦ କରୁ ନଥିଲେ ।" ତାଙ୍କର ଅସୀମ ଛାତ୍ରବତ୍ସଳତା ଥିଲା । ଛାତ୍ରମାନଙ୍କୁ ସେ ନିଜ ପୁତ୍ର ସନ୍ତାନ ପରି ସ୍ନେହମମତା ଦେଇ ପାଠ ପଢ଼ାଉଥିଲେ । ତାଙ୍କର ସୁଯୋଗ୍ୟ ଛାତ୍ର ଡକ୍ଟର ସଦାଶିବ ମିଶ୍ର କହନ୍ତି— "ଆଚାର୍ଯ୍ୟ ମହାଶୟ ଶ୍ରେଣୀରେ କେବେ ହେଲେ କାହାରିକୁ ତିରସ୍କାର ଅଥବା ଭର୍ତ୍ସନା କରିବା କେହି ଦେଖି ନାହାନ୍ତି କି ଶୁଣି ନାହାନ୍ତି । ଖୁବ୍ ବେଶି ରାଗିଲେ କିମ୍ବା ଅବାଧ୍ୟ ଓ ଅମନୋଯୋଗୀ ଛାତ୍ରକୁ ସଂଶୋଧନ କରିବାକୁ ଚାହୁଁଲେ ସେ କୌଣସି କଡ଼ା କଥା କେବେ କହୁ ନଥିଲେ । କେବଳ କହୁଥିଲେ "ତୁ ଦୁଷ୍ଟ ପିଲା ।" ଆଚାର୍ଯ୍ୟ ମହାଶୟଙ୍କର କ୍ରୋଧର ସୀମା ଏତିକି ଦୂରକୁ କେବଳ ଯାଉଥିଲା । ଆଉ ଅଧିକ ନୁହେଁ । ତାଙ୍କ ସ୍ନେହଶୀଳ ବ୍ୟବହାର ଦେଖି କୌଣସି ଛାତ୍ର ବି ଅବାଧ୍ୟ ହେବାକୁ ସାହସ କରୁନଥିଲେ । ଆଚାର୍ଯ୍ୟଙ୍କ ତୁଣ୍ଡରୁ 'ଦୁଷ୍ଟ ପିଲା' ପଦଟି ଶୁଣିଲେ ଛାତ୍ର ଭାବୁଥିଲା ଏହା ଗୋଟିଏ ବଜ୍ରପାତ ସଙ୍ଗେ ସମାନ । ଏହାଠାରୁ ଅଧିକ ଲାଞ୍ଛନା କିଛି ନଥିଲା । ଡକ୍ଟର ସଦାଶିବ ମିଶ୍ର, ଜଷ୍ଟିସ୍ ହରିହର ମହାପାତ୍ର ପ୍ରଭୃତି ଯେଉଁ ପ୍ରସିଦ୍ଧ ବ୍ୟକ୍ତିମାନେ ଆଜିର ଓଡ଼ିଶା ରାଜ୍ୟରେ ଶିକ୍ଷା, ସାହିତ୍ୟ, ସମାଜସେବା କ୍ଷେତ୍ରରେ ସ୍ୱନାମଧନ୍ୟ ହୋଇପାରିଛନ୍ତି, ସେମାନେ ସମସ୍ତେ ଆଚାର୍ଯ୍ୟ ମହାଶୟଙ୍କର ପଟ୍ଟଶିଷ୍ୟ ରୂପେ ନିଜେ ଅନୁଭବ କରିଥାନ୍ତି । ଆଚାର୍ଯ୍ୟ ଉପଦେଶ ଦେଉଥିଲେ ଆମ ଦେଶର ପ୍ରତ୍ୟେକ ଛାତ୍ର ଗୀତା ପାଠ କରିବା ଉଚିତ । ଗୀତାର ମହାନ୍ ସନ୍ଦେଶକୁ ଜୀବନରେ ପ୍ରତିଫଳିତ କରିବା ଉଚିତ ।

ଆଚାର୍ଯ୍ୟ ହରିହର କେବଳ ଓଡ଼ିଶାର ଜନନାୟକ ନଥିଲେ, ସେ ଥିଲେ ଭାରତ ବିଖ୍ୟାତ ତ୍ୟାଗୀ, କର୍ମୀ ଓ ଦେଶ ସେବୀ । ତାଙ୍କର କର୍ତ୍ତବ୍ୟ ପରାୟଣତା ଓ ଦେଶ ପ୍ରେମ ମହାତ୍ମା ଗାନ୍ଧୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ମହାତ୍ମା ଗାନ୍ଧୀ ବି ତାଙ୍କୁ ପ୍ରଶଂସା କରିଥିଲେ । ଗାନ୍ଧୀ ପ୍ରଶଂସା କରି କହନ୍ତି— "ଆଚାର୍ଯ୍ୟ ହେଉଛନ୍ତି ଆମ ମାନଙ୍କ ଭିତରେ ଜଣେ ନିଃସ୍ୱାର୍ଥପର ସଚ୍ଚା କର୍ମୀ" । ସ୍ୱୟଂ ଗାନ୍ଧୀଙ୍କ ତୁଣ୍ଡରୁ ଏକଥା ବାହାରିଛି । ଆଚାର୍ଯ୍ୟଙ୍କୁ ନିଃସ୍ୱାର୍ଥପର ସଚ୍ଚା କର୍ମୀ ରୂପେ ଗାନ୍ଧୀଜୀ କି ଉଚ୍ଚ ଆସନ ଦେଇଛନ୍ତି, ତାହା ଅନୁମାନ କରିବା କଷ୍ଟକର ନୁହେଁ । ସୁନା ଚିହ୍ନେ ବଣିଆ । ଗାନ୍ଧୀ ନିଜେ ଥିଲେ ଜଣେ ବଣିଆ ଜାତିର ଲୋକ ! ଦେଶ ସେବା ଥିଲା ତାଙ୍କର ଏକମାତ୍ର ବ୍ରତ । ସେଇ ଦେଶ ସେବା ଓ ସମାଜ ସେବା ଥିଲା, ଆଚାର୍ଯ୍ୟ ହରିହରଙ୍କର ପ୍ରତ୍ୟେକ ନିଃଶ୍ୱାସ ପ୍ରଶ୍ୱାସ । ଗୁଣ ଚିହ୍ନେ ଗୁଣିଆ ନ୍ୟାୟରେ, ଆଚାର୍ଯ୍ୟ ହରିହର ଦାସ, ସରୋଜିନୀ ନାଇଡୁ, ରାଜେନ୍ଦ୍ର ପ୍ରସାଦ, ପୁରୁଷୋତ୍ତମ ଦାସ ଟଣ୍ଡନ୍, ଠକକର ବାପାଙ୍କର ପ୍ରିୟଭାଜନ ହୋଇ ପାରିଥିଲେ । ଋଷି ଭଳି ଜୀବନ ଯାପନ କରି, ଆମ ସମସ୍ତଙ୍କୁ ଭଲ ମଣିଷ ହେବାକୁ ଯେଉଁ ଆଚାର୍ଯ୍ୟ ଆହ୍ୱାନ ଦେଇ ଯାଇଛନ୍ତି, ତାଙ୍କର ଜୀବନ-ଦର୍ଶନ କଣ ଥିଲା । ଇଂଜିନୟର ମଧୁ ବାବୁଙ୍କ ଭାଷାରେ ଆଚାର୍ଯ୍ୟଙ୍କ ଚରିତ୍ରର ନିର୍ଯ୍ୟାସ ହେଉଛି ତିନୋଟି କଥା—

୧- ସେ ଥିଲେ ଅଜାତ ଶତ୍ରୁ । ତାଙ୍କୁ ଦେଖିଲେ ସ୍ୱତଃ ମଥା ନଇଁ ପଡୁଥିଲା ।

୨- ଜଗତର ଛନ୍ଦ, କପଟ, ଅସଦାଚରଣରେ ସେ ଥିଲେ ବହୁ ଊର୍ଦ୍ଧ୍ୱରେ ।

୩- ତାଙ୍କ ନିଜର ସଂସାର ବୋଲି କିଛି ନଥିଲା । "ଦେଶ ପାଇଁ କିଛି କରିବା" ଥିଲା ତାଙ୍କର ପ୍ରତିଜ୍ଞା । ଏହି ପ୍ରତିଜ୍ଞାକୁ ସେ କାର୍ଯ୍ୟକାରୀ କରିଛନ୍ତି ତାଙ୍କର ଅନେକ ସହକର୍ମୀ ଓ ସହଯୋଗୀଙ୍କ ସହିତ, ବିଶେଷତଃ ପଣ୍ଡିତ ନୀଳକଣ୍ଠ ଦାସଙ୍କ ସହିତ ।

ଆଚାର୍ଯ୍ୟ ହରିହର ! କି ଉଦାର ବ୍ୟକ୍ତିତ୍ୱ ! ତାଙ୍କପରି ଲୋକ କୋଟିକରେ ଗୋଟିଏ ମିଳିଲେ ଢେର ।

ଆଚାର୍ଯ୍ୟ ହରିହରଙ୍କ ନାମରେ ନାମିତ ମହାବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କୁ କି ଉଦ୍‌ବୋଧକ ଦିଆଯାଇପାରେ, ତାହା ମୁଁ ସ୍ଥିର କରିପାରୁ ନାହିଁ । ତେବେ ଆଚାର୍ଯ୍ୟଙ୍କ ଜୀବନ-ଦର୍ଶନରୁ ପଦେ ଦି'ପଦ ପୁନରାବୃତ୍ତି କଲେ କ୍ଷତି ନାହିଁ ।

ପ୍ରଥମ ହେଲା, ଆଚାର୍ଯ୍ୟ ସମସ୍ତ ଭୋଗ ବିଳାସ ପରିହାର କରିଥିଲେ । ଆମେ ହୁଏତ ଭୋଗବିଳାସ ସମ୍ପୂର୍ଣ୍ଣ ପରିହାର କରିବାକୁ ସମର୍ଥ ନୋହୁଁ । କିନ୍ତୁ ଭୋଗବିଳାସକୁ ସୀମିତ ରଖିବାକୁ ସଂକଳ୍ପବଦ୍ଧ ହେବା ଦୁଃସାଧ୍ୟ ନୁହେଁ ।

ଦ୍ୱିତୀୟ ହେଲା, ଆଚାର୍ଯ୍ୟ କେବେ ହେଲେ କ୍ଷମତା ପଛରେ ଧାଇଁ ନଥିଲେ । ଅର୍ଥ ଲୋଭରେ ବାଧ୍ୟ ହୋଇ ନଥିଲେ । ଟଙ୍କା ହେଉଛି ଜୀବନରେ ବଡ଼ କଥା, ଏ ଚିନ୍ତା ତାଙ୍କ ମନରେ ନଥିଲା । ଆଜି ସମୟ ଆସିଛି, ଆମେ ଟଙ୍କା ଟଙ୍କା ବୋଲି ପାଗଳ ହୋଇ ଯାଉଛୁ । ଆଚାର୍ଯ୍ୟଙ୍କୁ ସ୍ମରଣ କରିବା ସମୟ ଆସିଛି, ଟଙ୍କା ସବୁକିଛି ନୁହେଁ, ଏହି ସଦ୍‌ବୁଦ୍ଧି ଆମର ଉଦୟ ହେଉ ।

ଏଇ ଗତ ସପ୍ତାହରେ ବିଲାତର ବ୍ରିଟିଶ୍ ବ୍ରଡ଼ କାଷ୍ଟିଂ କର୍ପୋରେସନ (ବି.ବି.ସି) ତରଫରୁ ଗୋଟିଏ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା । ବି.ବି.ସି. ଓ୍ୱାସିଂଟନ୍ ପ୍ରତିନିଧି ବିଭିନ୍ନ ତଥ୍ୟ ପରିବେଷଣ କରି କହିଥିଲେ ଯେ ଆମେରିକା ଯୁକ୍ତରାଷ୍ଟ୍ର ଭଳି ପୁଞ୍ଜିପତି ଦେଶରେ ବି ଅର୍ଥ ସଂଗ୍ରହ କରିବା ଓ ସମ୍ପତ୍ତି ଠୁଳ କରିବା ମନୋବୃତ୍ତି ହ୍ରାସ ପାଉଛି । ଡଲାର ମୁଦ୍ରା ଆଉ ସବ ଶକ୍ତିମାନ (Almighty Dollar) ହୋଇ ରହି ନାହିଁ । ଆମେରିକାରେ ଏଇ ନୂଆ ଚିନ୍ତାଧାରା ଖେଳୁଛି ।

ଆଜି ଆମେରିକାରେ ଯେଉଁ କ୍ଷୀଣ ଚିନ୍ତାଧାରା ଖେଳୁଛି, ଆଚାର୍ଯ୍ୟ ହରିହର ଦୀର୍ଘ ବହୁ ବର୍ଷ ପୂର୍ବେ ତାହା ଚିନ୍ତା କରି ଯାଇଛନ୍ତି, ତାହାକୁ ଅଙ୍ଗେ ନିଭେଇ ଯାଇଛନ୍ତି । ତାଙ୍କର ବ୍ୟାଙ୍କ୍ ଏକାଉଣ୍ଟ ଲୋଡ଼ା ନଥିଲା, ବ୍ୟାଙ୍କ୍ ବାଲାନସ ନଥିଲା । ବ୍ୟାଙ୍କ୍ ବାଲାନସ ନଥିଲା ବୋଲି ଆଜି ସେ ଆମର ନମସ୍ୟ, ଆମର ପରମାରାଧ୍ୟ, ଆମର ଆଦର୍ଶ, ଆମର ପୂଜନୀୟ । ଅନ୍ତତଃ ଗୋଟିଏ ହେଲେ କେଉଁ ବିଷୟରେ ଯଥା ସମାଜ ସେବା, ଅଥବା ଦରିଦ୍ରଙ୍କ ପ୍ରତି ସହାନୁଭୂତି ପ୍ରଦର୍ଶନ, ରୋଗୀ ସେବା ଅଥବା ଶୃଙ୍ଖଳିତା ଯେ କୌଣସି ଗୋଟିଏ ବିଷୟରେ ହେଲେ ଆମେ ଆଚାର୍ଯ୍ୟ ମହାଶୟଙ୍କ ପଦାଙ୍କ ଅନୁସରଣ କରିବାକୁ ସଂକଳ୍ପ ନେବା ଉଚିତ । ଭଲ ମଣିଷ ହେବାକୁ ସେ ଅନୁରୋଧ କରି ଯାଇଛନ୍ତି । ଅନ୍ତତଃ ଅଳ୍ପ କେତୋଟି ଭଲ ଗୁଣର ଅଧିକାରୀ ହୋଇ ଜୀବନ ଯାପନ କଲେ ତାଙ୍କ ଅଭିଳାଷକୁ ଆମେ ବାସ୍ତବରେ କେତେକାଂଶରେ ପୂରଣ କରି ପାରିବା । ଏ ଯୁଗର ଲୋକ ଆମେ ଯେଉଁମାନେ ଆଚାର୍ଯ୍ୟଙ୍କୁ ପ୍ରତ୍ୟକ୍ଷରେ ଦେଖିଛୁ, ଆମେ ହିଁ ଭଲ ମଣିଷର ଉଦାହରଣ ଦେଖାଇ ପାରିଲେ, ଆଗାମୀ ଯୁଗର ଓଡ଼ିଆ ଯୁବକ-ଯୁବତୀ ଭଲ ମଣିଷ ହେବାର ପ୍ରେରଣା ପାଇବେ । ମୋ ବିଚାରରେ, ଆଚାର୍ଯ୍ୟ ମହାଶୟ ଆମ ଉପରେ ଏହି ଦାୟିତ୍ୱ ଦେଇ ଯାଇଛନ୍ତି । ନିଜେ ଭଲ ମଣିଷଟିଏ ହୁଅ, ଝିଅ ବଂଶଧରଙ୍କୁ ଭଲ ମଣିଷ ହେବାକୁ ଶିକ୍ଷା ଦିଅ । ଆଚାର୍ଯ୍ୟ ହରିହର ମହାବିଦ୍ୟାଳୟର ଏହି ଆଭିମୁଖ୍ୟ ରହିବ ବୋଲି, ମୁଁ ଆଶାବାଦୀ ।

●

# ଆଚାର୍ଯ୍ୟ ହରିହରଙ୍କ ସ୍ମୃତିରେ

ଇ. ମଧୁସୂଦନ ଦାଶ

ରୋଗୀ ଶେଯପାଖେ          ବସି ଅପଲକେ
ସାରା ନିଶି ଯା'ଇ ପାହେ,
କପାଳେ ଯା' କର          କୋମଳ ସ୍ପର୍ଶର
ନିମିଷେ ରହୁ ନ ଯାଏ
ଆଉତ ସେ ଆଜ ନାଇ
ଅଞ୍ଜୁଳାରେ ମଳ          ବିସୂଚି ମଳୁର
ନିର୍ବିକାରେ ଯେ କାଢ଼ଇ । (୧)

ଯେଉଁ ସେବା-ନିଷ୍ଠ          ପ୍ରହରୀ ନିକଟ
ନପାରେ ଭରସି ପଶି,
ମୃତ୍ୟୁର ସାଇଁ          ବାହୁଡ଼ ପଡ଼ଇ
ମୁମୂର୍ଷୁ ଉଠଇ ହସି,
ଆଜି ସେ ସେବକ କାହିଁ ?
ରୋଗୀ ଯନ୍ତ୍ରଣାରେ          ଏବେ ହାହାକାରେ
କାହାରେ ରହିବେ ଚାହିଁ ? (୨)

ଆର୍ତ୍ତ ସେବା ବ୍ରତ          ଜାତି ପ୍ରେମ ସ୍ରୋତ
ଅଣାଇଲା ଯେ ଦେଶରେ
ଆଚାର୍ଯ୍ୟ ରୂପେ          ବରିଲେ ସୋହାଗେ
ଉତ୍କଳମଣି ଯା'ରେ,
ଆଜ ସେ ଅଧକ୍ଷ ନାଇ
ସଦା ସ୍ନେହଶୀଳ          ସେ ଛାତ୍ରବତ୍ସଳ
ଶିକ୍ଷକ ପାଇବା କାହିଁ ? (୩)

"ଏ ଦେଶ ଲବଣ          ଆମ ପ୍ରାପ୍ୟଧନ"
ଦେଇ ଯେ ହୁଙ୍କାର ରଡ଼ି

ଇଂରେଜ ସଇନ ସଙ୍ଗୀନେ ନମାନ
ଦମ୍ଭେ ଚଳଲେ ଇଞ୍ଚୁଉ
ସେ ବୀର ପୁଙ୍ଗବ କାହିଁ ?
ବିଷୟ ବାସନା କରିଲେ ବର୍ଜନ
ଯେହ୍ନୁ ଦେଶବ୍ରତ ପାଇଁ । (୪)

ମାରେଖି ଅପରେ କଅଁଳ କଥାରେ
"ଭଲ ମଣିଷ ହୁଅ",
ଡ଼ାକେ ଯେ ଆଶୀଷ ଦେଇ ଉଲ୍ଲାସେ
ଅନ୍ତର ଭରା ସ୍ନେହ
ଆଜ ସେ ମଣିଷ କାହିଁ ?
ପଣ କଲେ ବଂଶ ବୟସେ ମଣିଷ
ପରି ସେ ବଞ୍ଚିବା ପାଇଁ ? (୫)

ଯେଉଁ ଜୀର୍ଣ୍ଣଶୀର୍ଣ୍ଣ ଦୁଇଟି ଚରଣ
ସାରା ଓଡ଼ିଶାର ମାଟି
ମାଡ଼ି ବୁଲିଗଲେ 'ପଦଯାତ୍ରାରେ'
ସର୍ବୋଦୟ ମନ୍ତ୍ର ବାଣ୍ଟି,
ଆଜ ସେ ଚରଣ କାହିଁ
ଯୁଏଁ ଯାହାତଳେ ଯେତେବଡ଼ ହେଲେ
ମଥା ଯେ ପଡ଼ଇ ନଇଁ ? (୬)

ପୁଣ୍ୟ ସତ୍ୟବାଦୀ ବକୁଳ ବନରେ
ବୀର ପଞ୍ଚସଖା ମିଳି
ଯେ ସୌଭାଗ୍ୟ ସୂତ୍ରେ ବରିଲେ ଉତ୍କଳେ
ଯିବ କି ଏବେ ମଉଳି
ଆଜି ଯେ ସେ ଋଷି ନାଇ,
ତାକୁଛୁ ପ୍ରଣତ ହେ ଆଦର୍ଶ ସନ୍ତ
ତବ ମାତ ଗୀତ ଗାଇ ! (୭)

# ମୋ ବଡ ଦଦେଇ

**ନବ କିଶୋର ଦାଶ**

ଆଶ୍ଚର୍ଯ୍ୟ ହରିହର ମୋ ବଡ଼ ଦଦେଇ । ଦଦେଇ କହିଲେ ନନାଙ୍କ ବଡ଼ ଭାଇ । ପୁରୀ ଜିଲ୍ଲା ବ୍ରାହ୍ମଣ ପରିବାରରେ ବାପାଙ୍କୁ ନନା, ତାଙ୍କ ବଡ଼ ଭାଇଙ୍କୁ ଦଦେଇ ଓ ବାପାଙ୍କ ସାନ ଭାଇଙ୍କୁ କକେଇ ବୋଲି ଡକାଯାଏ । ସାକ୍ଷୀଗୋପାଳ ଦେଉଳ ପଛପଟେ ସୁଆର ସାହି, ହାଟ ସାହି ହୋଇ ରତ୍ନଚୀରା ନଈ ପାରି ହୋଇଗଲେ ଆରପଟେ ନଈ ସଙ୍ଗେ ସମାନ୍ତରାଳ ହୋଇ ଆମ ଗାଁ ଶ୍ରୀରାମଚନ୍ଦ୍ରପୁର । ସେଇ ଗାଁରେ ମହାଦେବ ଦାଶ ବ୍ରହ୍ମାଙ୍କର ୫ ପୁଅ ଓ ଦୁଇ ଝିଅ । ମହାଦେବ ଦାଶଙ୍କୁ ଗାଁରେ ସମସ୍ତେ ବ୍ରହ୍ମା ବୋଲି କହନ୍ତି ଆଉ 'ଧାନ ଆପଣେ' ବୋଲି ମଧ୍ୟ ଶ୍ରଦ୍ଧାରେ ଡ଼ାକୁଥିଲେ । ସେ ଗାଁ ସ୍କୁଲରେ ପ୍ରିୟ ଶିକ୍ଷକ ଥିଲେ । ଆମ ଘରୁ କେତେ ଘର ଛାଡ଼ି ମଧୁ ମିଶ୍ରଙ୍କ ଘର ସେ 'ବଡ଼ ଆପଣେ' । ମୁଁ ନନାଙ୍କ ବୟସର ଲୋକମାନଙ୍କଠାରୁ ଶୁଣିଛି ଯେ ସ୍କୁଲର ସବୁ ପିଲାଙ୍କୁ ନିଜ ପିଲା ପରି ସ୍ନେହ ଶ୍ରଦ୍ଧା କରୁଥିଲେ । ତାଙ୍କର ଏଇ ଗୁଣ ମୁଁ ବଡ ଦଦେଇଙ୍କ ଠାରେ ଦେଖିଛି । ତାଙ୍କର ପ୍ରଥମ ସ୍ତ୍ରୀ ବାଇକେଳ ଦେବୀଙ୍କର ଗୋଟିଏ ଝିଅ ଓ ଦୁଇଟି ପୁଅ । ଦ୍ୱିତୀୟ ସ୍ତ୍ରୀଙ୍କର ୩ ପୁଅ ଓ ଗୋଟିଏ ଝିଅ । ବଡ଼ ପିଇସିନାମା ମୁକ୍ତା ଦେବୀଙ୍କ ଠାରେ ଆଶ୍ଚର୍ଯ୍ୟ ହରିହର ତାଙ୍କ ବଡ଼ ପୁଅ । ତାଙ୍କ ଟଳଭାଇ ମାମୁଁ ଘରକୁ ପୁଅ ହୋଇ ଯାଇଥିଲେ । ତାଙ୍କ ନାଁ ମଧୁସୂଦନ ମିଶ୍ର । ସେ ସାନ ଦଦେଇ । ଦ୍ୱିତୀୟ ସ୍ତ୍ରୀ ଉତ୍କଳେ ଦେବୀଙ୍କର ପ୍ରଥମ ସନ୍ତାନ ମୋ ନନା ରାମକୃଷ୍ଣ ଦାଶ । ମୁଁ ମୋ ଜେଜେ ବାପାଙ୍କୁ ଦେଖିନାହିଁ । ତାଙ୍କର ଫଟୋ ଦେଖିଛି । ସେ ଦେଖିବାକୁ ମୋ ବଡ଼ଦେଇଙ୍କ ପରି, କେବଳ ଦାଢି ନଥିଲା । ଦଦେଇ ବୟସରେ ନନାଙ୍କଠାରୁ ବହୁତ ବଡ଼ । ମୋ' ବୋଉ ବଧୂ ହୋଇ ଆସିଲା ବେଳକୁ ଦଦେଇଙ୍କର ଦୁଇ ସ୍ତ୍ରୀ (ଭୁବନେଶ୍ୱରର ଅନନ୍ତ ମିଶ୍ରଙ୍କ ଦୁଇ ଭଉଣୀ) ମରି ଯାଇଥିଲେ । ତେଣୁ ମୋ ବୋଉ ତା ଯାଆ ମାନଙ୍କୁ ଦେଖିନାହିଁ ।

ମୋର ଦଦେଇଙ୍କୁ ଭଲ କରି ଦେଖିବାର ଓ ଜାଣିବାର ସୁଯୋଗ ହେଲା ମୁଁ ଯେତେବେଳେ ପୁରୀରେ ସାନ କକେଇ ଘରେ ରହି ପଢିବାକୁ ଆସିଲି । ମୋ ନନା ଓ ବୋଉ କଲିକତାରେ ରହୁଥିଲେ । ସେତେବେଳେ ବୋଧହୁଏ ୧୯୩୭-୩୮ ମସିହା । ମୋତେ ୮ ବର୍ଷ ହୋଇଥିଲା । ଦଦେଇ ପୁରୀରେ କକେଇଙ୍କ ଘରେ ରହୁଥିଲେ । ଦାଣ୍ଡ ବାରଣ୍ଡା କଡ଼ରେ ଗୋଟିଏ ଛୋଟ କୋଠରୀ ଥିଲା । ସେ ଘରେ ଆମେ ପିଲାମାନେ ପଢ଼ାପଢି କରୁଥିଲୁ ବୋଲି ତାକୁ ପଢାଘର ବୋଲି କୁହାଯାଉଥିଲା । ଦଦେଇଙ୍କ ଜିନିଷପତ୍ର—ଗୋଟିଏ ଛୋଟିଆ ବେଡ଼ିଙ୍ଗ, ବାକସ, ଚରଖା, ଗୋଟିଏ ଥଳି (ନେଳି ଦୋସୁତି ଖଦଡ଼ କନାରେ ତିଆରି), ଆଉ ଦୁଇଖଣ୍ଡ ସାନ ଧୋତି, ୭ ହାତ କମ୍ ଚଉଡ଼ା, ସେଇ ପଢ଼ାଘରେ ରଖନ୍ତି । ଦାଣ୍ଡ ବାରଣ୍ଡାରେ ରହୁଥାଆନ୍ତି । ଶୀତ ଦିନରେ ସେଇ ନେଳି ବୁଣା ଭଲ ଚଦର (ସାଲଠାରୁ ମୋଟା କମ୍ବଳଠାରୁ ପତଳା) ଘୋଡେଇ ହୁଅନ୍ତି । ଖଣ୍ଡିଏ ଧୋତି ପିନ୍ଧନ୍ତି ଖଣ୍ଡିଏ ଦେହରେ ଘୋଡ଼ାନ୍ତି । ଖରା ଦିନରେ ଆଗପଟେ ଛକ କରି ପକାନ୍ତି, ଶୀତ ଦିନରେ ପୁରା

ଦେଖାଉଥିଲେ ଘୂଅନ୍ତି । ଖଣ୍ଡିଏ ଖଦଡ଼ ଗାମୁଛା, ବେଡ଼ଙ୍ଗରେ ଗୋଟିଏ ଛୋଟର ତେଲ ବୁଣା ଦଉଡ଼ି, ଖଣ୍ଡିଏ ଧଳା ଖଦଡ଼ ଚଦରର ଆଉ ଗୋଟିଏ ଛୋଟ କାଠ ପଣି ତକିଆ । ପରେ ବଡ଼ ହେଲାରୁ ଜାଣି ପାରିଲି ଜଣେ ସାଧକର ଯେତିକି ଦରକାର ସେତିକି ତାଙ୍କର ଥିଲା । ବାହାରକୁ କେଉଁଆଡ଼େ ଗଲାବେଳେ ସେ ସବୁ ଜିନିଷ ସେ ନିଜେ ହାତରେ ନେଇ ଯାଆନ୍ତି ! ବେଡ଼ିଙ୍ଗ କାଖରେ ଯାକନ୍ତି, କାନ୍ଧରେ ଝୁଲି ମୁଣି ହାତରେ ଚରଖା । ବଡ଼ ହେଲାପରେ ଯେତେବେଳେ ଦଦେଇଙ୍କୁ ସେପରି ଅବସ୍ଥାରେ ଦେଖେ ମୋତେ ଲାଗେ ପୂର୍ବ କାଳର ଋଷିମାନେ ଏମିତି ରହୁଥିବେ ବୋଧହୁଏ । ଆମେ ସକାଳୁ ଉଠିଲା ବେଳକୁ ୬ଟା ୬.୩୦ ବେଳକୁ ଦଦେଇ ତାଙ୍କର ସମସ୍ତ ନିତ୍ୟକର୍ମ ପୂଜାପାଠ ସାରି ମସିଣାରେ ବସି ସୂତା କାଟୁ ଥାଆନ୍ତି । ସେଇ ପରି ଅବସ୍ଥାରେ ମୁଁ ତାଙ୍କ ପାଖକୁ ରମାଦେବୀ, ନବ ଚୌଧୁରୀ, ଗୋପ ଚୌଧୁରୀ ଆଉ ଅନ୍ୟାନ୍ୟ ଯେଉଁମାନେ ପରେ ନେତା ହେଲେ, ଆସିବାର ଓ ତାଙ୍କ ସହିତ ଆଲୋଚନା କରିବାର ଦେଖିଛି । ପରେ ମୁଁ ଯେତେବେଳେ ବଡ଼ ହୋଇ ଷଷ୍ଠ, ସପ୍ତମ, ଅଷ୍ଟମ ଶ୍ରେଣୀରେ ପଢ଼ିଲି ଓ ସକାଳୁ କସରତ, ବ୍ୟାୟାମ ଇତ୍ୟାଦି କରୁଥିଲି (ଦଦେଇ କହୁଥିଲେ ଓ କକେଇ ଶିଖେଇଥିଲେ) ସେତେବେଳେ ବହୁତ ସକାଳୁ ରାତି ଥାଉଣୁ ଉଠି ସ୍ୱର୍ଗଦ୍ୱାର, ସୁନାର ଗୌରାଙ୍ଗ ଦୌଡ଼ୁଥିଲି ସେତେବେଳେ ଦେଖିଛି ମୁଁ ରାତି ୪ଟାରେ ଉଠିଲା ବେଳକୁ ଦଦେଇ ଉଠି ଖାଡ଼ା ଯାଇ, ଲୁଗା ସଫା କରନ୍ତି (ତେଲ ତିଆରି ମୁଣ୍ଡା ସାବୁନ) ଦେଇ ଦାନ୍ତ ଘିଣ୍ଟାରେ ଘଷୁଥାନ୍ତି, ଆସନରେ ବସନ୍ତି, ବହୁତ ସମୟ ଜପ କରନ୍ତି (ଗୋଟିଏ ବଡ଼ ରୁଦ୍ରାକ୍ଷର ମାଳା ୫୦ ଦାନା ଥାଏ) ଗୀତା ପଢ଼ନ୍ତି. ତା ପରେ ସୂତା କାଟନ୍ତି । ୧୦ଟା ବେଳକୁ ଯାଇ ଟିକିଏ "ସ୍ୱରାଜ ଭବନ" ବନ୍ଧ ଦୋକାନରେ ବସନ୍ତି କି ଅନ୍ୟ କଣ କାମ ଥିଲେ କୁଆଡ଼େ ଯାଆନ୍ତି । ଗୋଡ଼ରେ ଦେଇ ମୋଟା ଚଟି ମହାତ୍ମା ଗାନ୍ଧୀ ଯେପରି ପିନ୍ଧୁଥିଲେ । ଗୋଟିଏ ପକେଟ ଘଣ୍ଟା (West End Watch Co.) ଅଣ୍ଟାରେ ଖୋସନ୍ତି । ନନା ୧୨ ଟଙ୍କା ଲେଖାଏଁ ଦୁଇଟି ଘଣ୍ଟା କଲିକତାରୁ କିଣି ଗୋଟିଏ ଭାଇନାଙ୍କୁ ଦେଇଥିଲେ ଆଉ ଗୋଟିଏ ନିଜେ ବ୍ୟବହାର କରୁଥିଲେ । ତା ଦେହରେ ଗୋଟିଏ ଛୋଟ ରେଳଇଞ୍ଜିନର ଛବି ଥାଏ ବୋଲି ମୋର ମନେ ପଡ଼ୁଛି । ନନାଙ୍କର ସେ ଘଣ୍ଟା ପଞ୍ଜାବି ଗ୍ରାଡ଼ି ପକେଟ କଡ଼ରେ ଗୋଟିଏ ଟିକି ପକେଟ ଥାଏ ସେଥିରେ ଥାଏ । ନନାଙ୍କ ସେ ଘଣ୍ଟା କଟକ ଡାକ୍ତରଖାନାରେ ଆଖି ଅପରେସନ ବେଳେ ପଞ୍ଜାବି ସହିତ ଚୋରି ହୋଇଗଲା । ଦଦେଇ ଦିନ ଭିତରେ ୩ଥର ଘର ଭିତରକୁ ଯାଆନ୍ତି—ଥରେ ଝାଡ଼ା ଯିବା ବେଳେ ଆଉ ଦୁଇଥର ଖାଇବା ପାଇଁ । ଖାଇ ବସିଲା ବେଳେ ପିଢ଼ାରେ, ଗୋଇଠି ରଖି ଟେକି ହୋଇ ବସି ଖାଉଥିଲେ । ପିଲାଦିନରୁ ଦେଖୁଛି ଖାଦ୍ୟରେ ପଇତା ନଥିଲା । ମୁଁ ବ୍ରାହ୍ମଣ ହେବା ପରେ (ଏଗାର ବର୍ଷରେ) ଦଦେଇଙ୍କୁ ଟେକ୍ନିକାଲରୁ କହିଲେ "ମୁଁ ବାବାଜୀ ହୋଇ ଗଲିଣି ଆଉ ପଇତା କଣ ହେବ" । ଦଦେଇ ଅମିଷ ଖାଉନଥିଲେ । ମୋ ଛୋଟ ବେଳେ ବୋଧହୁଏ ଦିନେ ମହାଷ୍ଟମୀ ଦିନ ଟିକିଏ ବଳି ମାଂସ ଖାଉଥିଲେ, ପରେ ଛାଡ଼ି ଦେଲେ । ଆଉ ଟିକିଏ ପାନ ଖାଉଥିଲେ ବୋଲି ମନେ ପଡ଼ୁଛି । ଦାନ୍ତ ନଥାଏ । ମୋର ପିତୃକୂଳରେ ଦାନ୍ତ ଓ ଆଖି ଦୁଇଟି ଦୁର୍ବଳ । ଦଦେଇ ପାନକୁ ହାତରେ ଚକଟି ଖାଉଥିଲେ ନନା କକେଇ ସମସ୍ତେ ଦୁଇ ଭିଡ଼ ଲେଖାଏଁ ଦାନ୍ତ ଲଗେଇ ଥିଲେ । ପୁଣି ସବୁ ଭାଇମାନେ ଡାକ୍ତରର ପାଇଁ ଜଗତସିଂହପୁରର କୌଣସି ମୁସଲମାନଙ୍କ ଠାରୁ କଷିମିଚ ମାଛ ପାଟିରେ ଟିକିଏ ଚେରଆଇ ହକିମ ଔଷଧ ଖାଇଥିଲେ ସେ ମାସରେ ୪ ଦିନ ମାସାନ୍ତ, ସଂକ୍ରାନ୍ତି, ଚନ୍ଦ୍ରକ୍ଷୟ, ଅମାବାସ୍ୟା ସୂର୍ଯ୍ୟାସ୍ତ ପୂର୍ବରୁ ରାତି ଖାଇବା ଖାଉଥିଲେ । ଦଦେଇ ବହୁତ କମ ଖାଉଥିଲେ । ଅଳ୍ପ ଟିକିଏ ଭାତ, ଡାଲି-ମୁଗଡାଲି ତାଙ୍କୁ ଭଲ ଲାଗୁଥିଲା, ଖାଦ୍ୟ ନିଶ୍ଚୟ ଥିବ ଆଉ ଟିକିଏ ପରିବା ସିଝିଲା । ରାତିରେ ଖଇରୁଟି ଡାଲି ଆଉ ପରିବା ତରକାରୀ । ଦଦେଇ, ନନା, କକେଇ ସମସ୍ତେ ଖାଇବା ବେଳେ ଲୁଣ ଓ କଞ୍ଚା ଲଙ୍କା ଖାଉଥିଲେ । ଲୁଣରେ କଞ୍ଚାଲଙ୍କା ଚକଟି ଦେଇ ଲଗେଇ ଲଗେଇ ଖାଆନ୍ତି । କାହିଁକି ଓ କଣରେ ଏ ବ୍ୟବସ୍ଥା

ବୋଲି ନନାଙ୍କୁ ପଚାରିବାରୁ ସେ କହିଥିଲେ ଯେ ସତ୍ୟବାଦୀ ସ୍କୁଲ ବୋର୍ଡିଂରେ ରହି ପଢିବା ବେଳୁ ହିଁ ଅଭ୍ୟାସ ହୋଇଥିଲା । ଅଳ୍ପ ଡାଲି ତରକାରୀ ହେଲେ ମଧ୍ୟ ଚଳିଯାଏ । ଦଦେଇ ଯେତେବେଳେ ସତ୍ୟବାଦୀ ସ୍କୁଲ ବୋର୍ଡିଂରେ ରହୁଥିଲେ । ଅନ୍ୟାନ୍ୟ ଶିକ୍ଷକ ଯଥା ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ ମିଶ୍ର, ପଣ୍ଡିତ ବାସୁଦେବ ମହାପାତ୍ର ମଧ୍ୟ ରହୁଥିଲେ । ଦଦେଇ ବୋର୍ଡିଂରେ ପିଲାଙ୍କ କଥା ବୁଝୁଥିଲେ ବୋଲି ନନା କହୁଥିଲେ । ଦଦେଇ ଧିରେ ଧିରେ ଖାଦ୍ୟ ପରିମାଣ କମ କରିଦେଲେ । ଡାହାଣ ହାତକୁ ଅଞ୍ଜୁଳି କରି ମଡ଼େଇ ଦେଲେ ତା ଭିତରେ ଯେତିକି ଭାତ ରହୁଥିଲା ସେତିକି ଭାତ ଖାଉଥିଲେ । ବେଶୀ ଥିଲେ କାଢିକରି ରଖି ଦିଅନ୍ତି । ଦଦେଇଙ୍କୁ ମୁଁ କେବେ ହେଲେ ରାଗିବାର ଦେଖିନି । ଆମେ ଦୁଇ ଭାଇ ଦୁଷ୍ଟାମି କଲେ ଆମକୁ ବେଞ୍ଚ ଉପରେ ବସେଇ ଦିଅନ୍ତି ଟିକିଏ କାନକୁ ଧରି ଦିଅନ୍ତି କହନ୍ତି "ଏଠୁ ଉଠିବନି" ଆମେ ଦୁହେଁ ମୁହଁକୁ ମୁହଁ କରି ହସୁ ଯେ ଦଦେଇ ରାଗୁ ନାହାନ୍ତି କାହିଁକି ବୋଲି । ତେବେ ଭିତରେ ଭୟ ଥାଏ କାରଣ ନନା, କକେଇ ତାଙ୍କୁ ଠାକୁରଙ୍କ ପରି ଶ୍ରଦ୍ଧା ଭକ୍ତି କରୁଥିଲେ । ପୁଣି ସେ ପିଲା ବୟସରେ ଦଦେଇଙ୍କୁ ଅବଜ୍ଞା କରିବାର ପ୍ରବୃତ୍ତି ବି ହୁଏନି । ରାଗିଲେ ସିନା ବଦମାସୀ କରିବି, ନ ରାଗିଲେ କି ଦୁଷ୍ଟାମି କରିବ ? ତାଙ୍କୁ ଦେଖିଲେ ମଧ୍ୟ ସେ ବୟସରେ ଦୁଷ୍ଟାମି ବନ୍ଦ ହୋଇ ଯାଉଥିଲା । ବହୁତ ସମୟରେ ଆମ ଦୁଇ ଭାଇଙ୍କୁ ପାଖରେ ବସାଇ ଭଲ କଥା ଉପଦେଶ ଦେଉଥିଲେ । ଦୁର୍ଭାଗ୍ୟ ଯେ ସେ ସବୁ ମହାବାକ୍ୟ ଆଉ ମନେ ନାହିଁ । କେବଳ ମନ ଭିତରେ ମୂଳଦୁଆ ଆକାରରେ ଅଜ୍ଞାତ ଅବସ୍ଥାରେ ରହିଛି । ଦଦେଇ ମଝିରେ ମଝିରେ ତାଙ୍କ କମଣ୍ଡଳ ଧରି କୁଆଡ଼େ ବାହାରି ଯାଆନ୍ତି ଖାଲି ଗଲାବେଳେ କହି ଦେଇ ଯାଆନ୍ତି "ମୁଁ ଟିକିଏ ବାହାରକୁ ଯାଉଛି ମୋ ପାଇଁ ଖାଇବାକୁ କରିବନି ।" ୨।୩ ଦିନରୁ ଆରମ୍ଭ କରି ୨୦।୨୫ ଦିନ ୧ ମାସ ମଧ୍ୟ ବାହାରେ ରହନ୍ତି । ହଠାତ୍ ଆସି ପହଞ୍ଚି ଯାଆନ୍ତି । ଦଦେଇଙ୍କୁ ଦେଖିଲେ ସେଇ ପିଲା ବୟସରେ ମଧ୍ୟ ଭଲ ଲାଗୁଥିଲା । ଦଦେଇ ପୁରୀରେ ଘରେ ଥିଲେ ସମସ୍ତଙ୍କୁ ଭଲ ଲାଗୁଥିଲା । ସାନ କକେଇ ତାଙ୍କ ପୁଅ ବୟସର । ତାଙ୍କୁ ଦଦେଇ ସେଇପରି ଭଲ ମଧ୍ୟ ପାଉଥିଲେ । କକେଇଙ୍କର ମଧ୍ୟ ତାଙ୍କ ପ୍ରତି ପ୍ରଗାଢ ଭକ୍ତି ଥିଲା । ବଡ଼ ହୋଇ ଯେତେବେଳେ ଗୀତା ପଢିଲି ଆଉ ଟିକିଏ ଟିକିଏ ବୁଝିପାରିଲି ସେତେବେଳେ ମନେ ମନେ ହିସାବ କରି ଦେଖିଛି ଗୀତାରେ ଠାକୁର ପ୍ରତ୍ୟେକ ଅଧ୍ୟାୟରେ ଯାହା ସବୁ କହିଛନ୍ତି ତାକୁ ଯଦି କାର୍ଯ୍ୟରେ ପରିଣତ କରାଯାଏ ତେବେ କେବଳ ଦଦେଇ ଜଣେ ଯିଏ କରୁଥିଲେ । ଗୀତାକୁ ମନୁଷ୍ୟ ରୂପ ଦେଲେ ମୋ ଦଦେଇଙ୍କ ପରି ହେବ । ମୋ ଦଦେଇ ବୋଲି ନୁହେଁ, ସେ ପ୍ରକୃତରେ ସେଇପରି ଥିଲେ । ଆଉ ଜଣେ ଲୋକ କାହାକୁ ମୁଁ ଏ ପର୍ଯ୍ୟନ୍ତ ଦେଖିନି ଯେଉଁଠି ଗୀତାର ପ୍ରତ୍ୟେକ ଶ୍ଳୋକକୁ ବିଶ୍ଳେଷଣ କରିହେବ । ହିମାଳୟରେ ଋଷିମାନେ ଥାଇ ପାରନ୍ତି । ଦଦେଇ, ନନା, ବଡ଼ କକେଇ, ବଡ଼ ପିଉସି ସମସ୍ତଙ୍କର ଆଖି ଦୁର୍ବଳ । ଦଦେଇ ଶେଷ ଆଡ଼କୁ ଦେଖି ପାରୁନଥିଲେ । କିନ୍ତୁ ଯାହାକୁ ଥରେ ଜାଣିଥିଲେ ପାଟି ଶୁଣିଲେ ନାଁ ଧରି ଡାକୁଥିଲେ । ସେଇ ବୟସରେ ମଧ୍ୟ ମାଟ୍ରିକ, ଆଇ.ଏର ଗଣିତ, ବୀଜଗଣୀତ, ଜ୍ୟାମିତି, କାଲକୁଲଇସର ପ୍ରଶ୍ନ କହିଲେ ସାମାନ୍ୟ ଚିନ୍ତା କରି ତାର ଉତ୍ତର କହି ଦିଅନ୍ତି ଓ ଧାରା ବତେଇ ଦିଅନ୍ତି । ମୋର ସେତେବେଳେ କାହିଁକି ମନେହୁଏ ଯେ ଦଦେଇ ତପସ୍ୟା କରି କରି ସିଦ୍ଧି ପାଇ ସାରିଛନ୍ତି । ବହୁତ ସମୟରେ ଦଦେଇ ଜାଣିପାରନ୍ତି, ମୋ ବିବାହର ୧୯୫୩ ମସିହା ଜୁଲାଇ ମାସରେ ହୋଇଥିଲା । ଏକାଦିନେକ ମୋ ସାନଭଉଣୀର ବିବାହର ଲଗ୍ନ ହେଲା । ଦଦେଇ କିଛି ଦିନ ପୂର୍ବରୁ କୁଆଡ଼େ ଯାଇଥିଲେ କେହି ଜାଣିନଥାଆନ୍ତି । ନନା ତାଙ୍କୁ ଖବର ଦେଇନପାରି ବହୁତ ମନସ୍ତାପରେ ଥାଆନ୍ତି । କହିଲେ ମୋ ବଡ଼ ପୁଅ ବଡ଼ ଝିଅ ବିଭା କରୁଛି ଭାଇନା ମୋ ଘରର ଠାକୁର ତାଙ୍କୁ ଖବର ଦେଇ ପାରିଲିନି । ମଙ୍ଗଳ କାର୍ଯ୍ୟ ଅପୂର୍ଣ୍ଣ ହେଲା ପରି ଲାଗୁଛି । ମୋର ମଧ୍ୟ ବହୁତ ମନ ଖରାପ ହେଉଥିଲା ଯେ ଦଦେଇଙ୍କୁ ମୁଣ୍ଡିଆ ନମାର

ବିଭା ହେବ ବୋଲି । ଦଦେଇ କିନ୍ତୁ ଠିକ୍ ସେଇଦିନ ସକାଳୁ ଆସି ଗାଁରେ ପହଞ୍ଚି "ରାମ ! ସବୁଠିକ୍ ଚାଲିଛି ତ ?, ବୋଲି ପଚାରିଲେ ଓ ବୁଝାବୁଝି କଲେ । ମୁଁ ବିଭା ହୋଇ ପୁଣି ଗଲିଣି ବୋଲି ଶୁଣି ପୁଣି ଯାଇ ମୋ ଶଶୁର ଘର ପହଞ୍ଚି "କଣ ପଣ୍ଡିତ ଆପଣେ ! ମଙ୍ଗଳକାର୍ଯ୍ୟ କେତେ ବାଟ ଗଲା ?" (ମୋ ଜେଜେ ବାପା ଶଶୁର ପଣ୍ଡିତ ଆନନ୍ଦ ମିଶ୍ର ନିଜର ଝିଅ ନଥିବାରୁ ମୋ ସ୍ତ୍ରୀକୁ କନ୍ୟାଦାନ କରୁଥିଲେ) ଦଦେଇଙ୍କ ପାଟି ଶୁଣି ମୋ ମନ ଖୁସିରେ ପୂରିଗଲା, ଆଖିରୁ ପାଣି ବୋହି ପଡ଼ିଲା । କେବଳ ଏ ଗୋଟିଏ ଘଟଣା ନୁହେଁ ଅନେକ ଥର ଦେଖିଛି ଦଦେଇ ମନକୁ ବହୁତ କଥା ଜାଣି ପାରନ୍ତି । ବିଶେଷ କରି କାହାର ଦେହ ଖରାପ ହେଲେ କେବଳ ନିଜ ଘରେ ନୁହେଁ ଅନ୍ୟ ଘରେ ମଧ୍ୟ, ଦଦେଇ ଜାଣି ପାରନ୍ତି । ଆଉ ମଧ୍ୟ ଅନୁଭବ କରିଛି ମନର ଯେତେ ଚଞ୍ଚଳତା, ଦୁଃଖ, ଅଶାନ୍ତି ଥିଲେ ମଧ୍ୟ ଦଦେଇଙ୍କ ପାଖରେ ବସିଲେ କି ତାଙ୍କ ମୁହଁକୁ ଚାହିଁଲେ ମନ ଶାନ୍ତ ହୋଇଯାଏ, ମନର ଅଶାନ୍ତ ଅବସ୍ଥା ଦୂର ଚାଲିଯାଇ ମନ ପ୍ରଶାନ୍ତ ହୋଇଯାଏ । ଥରେ ସେଇ ଦିନିଦିନେ ଧନୁଷ୍ଟ କଳି ଧରି ପଢ଼ା ଘରେ ବସି ସୁତା କାଟୁଥିଲି । ଦଦେଇ ବାରଣ୍ଡାରେ ତାଙ୍କ ବାକସ୍ ଚରଖାରେ ସୁତା କାଟୁଥାଆନ୍ତି । ମନରେ ଥାଏ ଯେ ଦଦେଇଙ୍କ ଠାରୁ ଚଞ୍ଚଳ ଓ ସରୁ ସୁତା କାଟିବି ବୋଲି । ଦଦେଇ ଜାଣିପାରି କହିଲେ "ନବ, ଆମ ଦେଶ ଲୁଗାରେ ସରୁ ସୁତା କାଟିଲେ ମଜବୁତ ହେବନି । ଟିକିଏ ମୋଟା ହେଲେ ଭଲ । ଧୀରେ ଧୀରେ କାଟୁନୁ, ଚଞ୍ଚଳ ହେଲେ ସୁତା ବେଶି ଛିଣ୍ଡିବ ।" ସୁତା କାଟି ଦଦେଇଙ୍କୁ ଦେଇ ଖଣ୍ଡିଏ ଖଦଡ଼ ଲୁଗା କରି ପିନ୍ଧିଥିଲି ।

୧୯୫୨ରେ ଗୃହସ୍ଥ କରିବା ପରେ ଥରେ ଦଦେଇ ପଚାରିବାରୁ କହିଲି "ଦଦେଇ, ଗୃହସ୍ଥରେ ଏତେ ଗୋଳମାଳ ଯେ ନିଜର କର୍ତ୍ତବ୍ୟ ଠିକ୍ ରଖିବା କଷ୍ଟ ।" ଦଦେଇ କହିଥିଲେ "ନିଜର ନିଷ୍ଠାରେ ରହିଲେ ସବୁ ଠିକ୍ ହୋଇଯିବ । ନିଜ ନିଷ୍ଠାରେ ଠିକ୍ ରହିବୁ, ନିଜର ପିଲାଙ୍କୁ ସେହିପରି ତିଆରି କରିବୁ ଯେ ସେମାନେ ଯେପରି ଭଲ ବାପ, ମା ହେବେ । ସେମାନେ ତାଙ୍କ ପିଲାଙ୍କୁ ଠିକ୍ କରି ଗଢ଼ିବେ । ତାହା ହେଲେ ସଂସାରରେ ଭଲ ମଣିଷଙ୍କ ସଂଖ୍ୟା ବଢ଼ିବ । ପୁଣି ତୋ ପାଖରେ ଯେଉଁମାନେ ରହିବେ ସେମାନେ ତୋତେ ଦେଖି ନିଜକୁ ଠିକ୍ କରିବେ । ତୁ ତୋ ପାଇଁ, ତୋ ନିଜ ପିଲାଙ୍କ ପାଇଁ ଯାହା କରିବୁ ସେତ ତୋର କରିବାର କଥା । ପ୍ରତ୍ୟେକ ଜୀବର ଧର୍ମ ନିଜ ପାଇଁ କରିବ । ଦିନ ଶେଷରେ ରାତିରେ ଶୋଇଲା ବେଳକୁ ଚିନ୍ତା କରିବୁ ଅନ୍ୟ ପାଇଁ କଣ କରିଛୁ ? କାହାର କିଛି ଉପକାର କରି ପାରିଛୁ କି ? କେବଳ ସେତିକ ପୁଣ୍ୟ କର୍ମ ।"

ମୋ ବଡ଼ ଦଦେଇଙ୍କ ବିଷୟରେ କହିବା ମୋର ଧୃଷ୍ଟତା ହେବ । ସମୁଦ୍ର ବିଷୟରେ ଯେତେ ବର୍ଣ୍ଣନା କଲେ ବି ସେ ବର୍ଣ୍ଣନା ଅପୂର୍ଣ୍ଣ ହେବ । ସମୁଦ୍ର ଥରେ ଦେଖିଦେଲେ ଅନୁଭବ ହେବ ଆଉ ବର୍ଣ୍ଣନା ଦରକାର ନାହିଁ । ମୁଁ ମୋ ଦଦେଇଙ୍କୁ ଅନୁଭବ କରିଛି ମାତ୍ର । ଗଭୀରତା ଜାଣିବା ବା ମାପିବା ମୋର କ୍ଷମତାର ବାହାରେ ଓ କାମ ମଧ୍ୟ ନୁହେଁ ।

# ଯୁଗସ୍ରଷ୍ଟା

ଆରତି କର
ଡି.ଏ.ଭି ପବ୍ଲିକ୍ ସ୍କୁଲ, ଭୁବନେଶ୍ୱର-୧୨

ଆଚାର୍ଯ୍ୟ ସେ ଶ୍ରେଷ୍ଠ ଗୁରୁ
ତା' ବ୍ୟକ୍ତିତ୍ୱ ତୁଳ ନାହିଁ ଲୁହ
ଯୁଗସ୍ରଷ୍ଟା, ସଂସ୍କାରକ ଯେହି
ତା ପାଇଁ ତ ପ୍ରତି ହୃଦେ କୋହ ।

ଅଛି ସେହି ସତ୍ୟବାଦୀ
ନାହିଁ କିନ୍ତୁ ସତ୍ୟର ପୂଜାରୀ
ମାଟି ସଙ୍ଗେ ମାଟି ହେଲ ସିଏ
ଆମେ କିନ୍ତୁ ପାରିନାହୁଁ ଭୁଲି ।

ହେ ବିପ୍ଳବୀ ହରିହର
ଆସି ଥରେ ଦେଖି ଯାଅ ଏଠି
ତୁମ୍ଭର ଦାୟାଦ ଆଜ ଭୂମିରେ ଗଡ଼ୁଛୁ
ସାହା ଆମ କାହିଁ ବା କେଉଁଠି ?

ଆଣିଦେଲ ସ୍ୱାଧୀନତା
ସହି କେତେ ଅଦ୍ଧାରୀ ଶାସନ
ଶିକ୍ଷା ଦେଲ ପ୍ରତିଟି କ୍ଷେତ୍ରରେ
ସେ ନିମନ୍ତେ ଝୁରୁଅଛି ମନ ।

ସେବାର ମହାନ ମନ୍ତ୍ରେ
ହୋଇଗଲ ସତତ ଆବଦ୍ଧ
ସାଜିଲ ବିପ୍ଳବୀ ପୁଣି
ଦେଖାଇଲ ସ୍ୱାଧୀନତା ପଥ ।

'ପଞ୍ଚସଖା' ରୂପେ ତୁମେ
ଦେଖାଦେଲ ବକୁଳ ବନରେ
କର୍ମୀ ହୋଇ ରଖିଗଲ ଯଶ
ଯୁଗେ ଯୁଗେ ଅମର ଅକ୍ଷରେ ।

ତୁମର ସେ ମହାନ ଆଦର୍ଶ
ଜାଗୁ ସଦା ଆମର ପ୍ରାଣରେ
ଝରୁ ତୁମ ଆଶିଷର ଧାରା
ପଛ ଘୁଞ୍ଚା ନଦେଉ କର୍ମରେ ।

ହେ ଉଦାର, ସତ୍ୟଦ୍ରଷ୍ଟା
ଘେନ ଆମ ବିନମ୍ର ପ୍ରଣତି
ତୁମେ ହିଁ ତ ପଥ ପ୍ରଦର୍ଶକ
ଆମ ପାଇଁ ମଙ୍ଗଳ ବିଭୂତି ।

●